# ପୃଥିବୀର
# ଲୋକକଥା

୧୮



ଶ୍ରୀଲଙ୍କା - ୧

# ପୃଥିବୀର ଲୋକକଥା

## ଶ୍ରୀଲଙ୍କା ଲୋକକଥା

[ ଦ୍ୱିତୀୟ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍.ସି., ଏଲ୍.ଏଲ୍.ବି,
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍.ଏ., ବି. ଇଡ୍,

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

Srilanka Lokakatha
Dwitiya Bhaga

# ପୃଥିବୀର ଲୋକକଥା

ଶ୍ରୀଲଙ୍କା ଲୋକକଥା
ଦ୍ୱିତୀୟ ଭାଗ



ପ୍ରକାଶକ :
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ-ଦଧାଲ, ଜି-ପୁରୀ

ପ୍ରଥମ ସଂସ୍କରଣ :
ମହାଳୟା
ତା ୨୭-୯-୨୦୦୦

ମୁଦ୍ରଣ :
ଗ୍ରାମସେବକ ସମବାୟ ପ୍ରକାଶନୀ ଲିଃ,
ବାଖରାବାଦ, କଟକ-୨

ମୂଲ୍ୟ : ବାରଟଙ୍କା ମାତ୍ର

# ନିବେଦନ

ବହୁଦିନ ଧରି ଲୋକକଥା ପ୍ରକାଶ ପ୍ରାୟ ବନ୍ଦ ହୋଇ ଯାଇଥିଲା । ପୁଣି ପ୍ରକାଶ ପାଉଛି । ଲୋକକଥା ଅଭିଜ୍ଞ ଲୋକର ଉପଦେଶ । ଗପ ମାଧ୍ୟମରେ ମଣିଷ ମଣିଷ ହେଉ, ଏହାହିଁ ଏହାର ମୂଳ ଲକ୍ଷ୍ୟ ।

ଆମର ଶିକ୍ଷା ତ୍ରୁଟି ପୂର୍ଣ୍ଣ । ଏହା ଆମର ବେକାର ସମସ୍ୟା ସମାଧାନରେ ସାହାଯ୍ୟ ନ କରି ସହାୟକ ହୋଇଛି । ଏଇ ସମସ୍ୟା ସମାଧାନ ପାଇଁ ପରୀକ୍ଷାମୂଳକ ଭାବରେ ପୁରୀ ଜିଲ୍ଲା ନିମାପଡ଼ା ଥାନାର ବିଦ୍ୟାଳଠାରେ ଗୋଟିଏ ବହୁମୁଖୀ ବିଦ୍ୟାଳୟର ଆରମ୍ଭ ହୋଇଥିଲା । ଚନ୍ଦାଧାରୀ କାର୍ଯ୍ୟକାରୀ ହେବା ପୂର୍ବରୁ ଏହାକୁ ପରିଚାଳନା ସରକାର ହାତକୁ ନେଲେ । ତା'ପରେ ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚନ ମାଧ୍ୟମରେ ପରିଚାଳନା କମିଟି ଗଢ଼ିଲେ । ଏବେ ଏହା ଏକ ସରକାରୀ ବିଦ୍ୟାଳୟ ।

ସେଇ ଅନୁଷ୍ଠାନ ଚଳାଇବା ପାଇଁ ଭିକ୍ଷା ନ କରି ଅର୍ଥ ପାଇଁ ଲୋକକଥା ପ୍ରକାଶ କରାଯାଇଥିଲା ।

ଚନ୍ଦାଧାରୀ ମରେ ନାହିଁ । ଫଲ୍‌ଗୁ ହୋଇ ପୁଣି ଅନ୍ୟତ୍ର ପ୍ରକାଶ ପାଏ । ପୁଣି ଉଦ୍ୟମ ହେଉଛି । ଏହାର ସାଫଲ୍ୟ ପାଇଁ ଅର୍ଥ ଦରକାର । ପୁଣି ଲୋକକଥା ପ୍ରକାଶ କରାଯାଉଛି ।

ଲୋକେ ପୁରାତନ ମଣିଷର ଅଭିଜ୍ଞତାକୁ ଜାଣିଲେ ବଦଳି ଯିବେ, ଏହା ହିଁ ଆମର ଆଶା ।

ଏଇ ଉଦ୍ୟମ ପାଇଁ ଆପଣଙ୍କ ସଦିଚ୍ଛା, ସାହାଯ୍ୟ ଓ ସହାନୁଭୂତି ପାଇଁ ବିନମ୍ର ନିବେଦନ ।

**ଲକ୍ଷ୍ମୀଧର ମହାନ୍ତି**

# ସୂଚିପତ୍ର





# ପିଠା

ବହୁଦିନ ତଳେ ଗୋଟିଏ ଗାଁ'ରେ ଜଣେ ମୁଖିଆ ଥିଲା । ତାର ସମ୍ପତ୍ତି ବାଡ଼ି ବହୁତ । ଘରେ ଦୁଇ ଦୁଇଟା ଭେଣ୍ଡା ପୁଅ । ସେମାନେ ଅବିବାହିତ । ଚାଷ କାମକରନ୍ତି । ମୁଖିଆ ସ୍ତ୍ରୀ ଏକୁଟିଆ । ଘରର ସବୁ କାମ ସେ କରେ ।

ଥରେ ମୁଖିଆର ଆରିଷା ପିଠା ଖାଇବାକୁ ପ୍ରବଳ ଇଚ୍ଛା ହେଲା । ସେ ତାର ସ୍ତ୍ରୀକୁ କହିଲା—"ହଇଲେ, ଆମର ଦି'ଟା ଆରିଷା ପିଠା କର । ଆମେ ସମସ୍ତେ ଖାଇବା ।"

ସ୍ତ୍ରୀ ତାର କହିଲା--"ହଉ । ଫୁରୁସତ ମିଳିଲେ କରିଦେବି ।" ଏହା ଭିତରେ କିଛିଦିନ ଚାଲିଗଲା । ମଝିରେ ମଝିରେ ପିଠା କରିବାକୁ ମୁଖିଆ ତାର ସ୍ତ୍ରୀକୁ ମନେ ପକାଇ ଦିଏ । କିନ୍ତୁ ସ୍ତ୍ରୀଟି ତାର ଏପରି କାର୍ଯ୍ୟବ୍ୟସ୍ତ ଯେ ସମୟ ତାକୁ ଠିକେହେଲେ ମିଳେ ନାହିଁ । ତେଣୁ ଯେତେ ଆଗ୍ରହ ଥିଲେ ବି ସେ ପିଠାଦି'ଟା କରିପାରେ ନାହିଁ ।

ଥରେ ସୁବିଧା ମିଳିବାରୁ ସେ ଦି'ଟା ଆରିଷା ପିଠା କଲା । ଘରେ ପିଠାକୁ ରଖି ଦେଇ କାମରେ ବ୍ୟସ୍ତ ରହିଲା । ପୁଅ ଦି'ଟା କାମରୁ ଫେରି ଖାଇବାକୁ ମାଗିଲେ । ମା ତାଙ୍କର କହିଲା—"ଗମ୍ଭୀରି ଘରେ ପିଠା ଅଛି । ତୁମେ ଦି'ଟା ଖାଇବ । ବାପାଙ୍କ ପାଇଁ ରଖିବ ।"

ପିଲାମାନେ ପିଠାଖାଇ ଚାଲିଗଲେ । ତାପରେ ମୁଖିଆ ଆସି ପହଞ୍ଚିଲା । ସ୍ତ୍ରୀ ତାକୁ କହିଲା—"ଆଜି ଆରିଷା ପିଠା

କରିଛି । ମୁଁ ଯାଇପାରୁ ନାହିଁ । ତୁମେ ଗମ୍ଭୀର ଘରକୁ ଯାଅ । ସେଠି ପିଠା ଅଛି । ଖାଇଦେବ ।”

ମୁଖିଆ ଆରଷା ପିଠା ହେଇଥିବା କଥା ଶୁଣି ଭାରି ଖୁସି । ଅନ୍ୟଦିନ ହୋଇଥିଲେ, ଖାଇବାକୁ ଦେବାକୁ ସ୍ତ୍ରୀକୁ ତାର ସେ ବାଧ୍ୟ କରିଥାନ୍ତା । ଆଜି ତ ସେ ଆରିଷା ପିଠା ଖାଇବାକୁ ପାଗଲ । ତେଣୁ ସେ କିଛି ନ କହି ଗମ୍ଭୀର ଘରକୁ ଗଲା । ଯେଉଁଠି ପିଠା ରହେ, ସେ ସବୁ ଜାଗାକୁ ତନ୍ନତନ୍ନ କରି ଦେଖିଲା । କିନ୍ତୁ କେଉଁଠି ପିଠା ପାଇଲା ନାହିଁ । ସ୍ତ୍ରୀ ପାଖକୁ ଆସି କହିଲା—“ହଇଲୋ, ପିଠା ପରା ରଖିଥିଲୁ । ସେସବୁ ଜାଗା ଖୋଜିଲି । ପିଠା ତ କାହିଁ କେଉଁଠୁ ପାଇଲି ନାହିଁ ?”

ସ୍ତ୍ରୀ କହିଲା—“ମୋତେ ଆଉ ସେ କଥା ପୁଚ୍ଛ ନାହିଁ । ପିଲାଙ୍କୁ ତୁମେ ଯେମିତି ବଢ଼ାଇଛ, ତାର ଫଳ ପାଉଛ । ବାରମ୍ବାର କହି ସେମାନଙ୍କୁ କହିଲି, ବାପାଙ୍କ ପାଇଁ ପିଠା ରଖିବ । ସେ ସମସ୍ତେ ସବୁ ଖାଇଦେଲେ । ମୁଁ କ’ଣ କରିବି ?”

ଏକଥା ଶୁଣି ମୁଖିଆଟି ରାଗିଗଲା । କିନ୍ତୁ ଅନ୍ୟଦିନ ଭଳି ସେଦିନ ସେ ପାଟି କଲା ନାହିଁ । ଚୁପ୍ ହୋଇ ସେଠୁ ଚାଲିଗଲା । ସେ ଜାଣେ, ସେ ଯାହା କହିବ ପିଲାମାନେ ଜାଣିବେ । ତା’ କଥାକୁ କଦର୍ଥ କରିବେ । ଅଯଥା ଘରେ ଅଶାନ୍ତି ଓ କନ୍ଦଳ ସୃଷ୍ଟି ହେବ । ତାର ତ ଗାଁ’ରେ ମାନ, ସମ୍ମାନ, ଇଜ୍ଜତ ଓ ମହତ ଅଛି । ତାଙ୍କୁ ଲୋକେ ବି ଖାତିର କରନ୍ତି । ତା କଥା ମାନନ୍ତି । ଘରକଥା ଗାଁ’ଲୋକେ ଶୁଣିଲେ, ତାଙ୍କୁ ଆଲୋଚନା କରିବାକୁ ଖୋରାକ ମିଳିଯିବ । ବରଂ ଚୁପ୍ ରହିଲେ କେହି କିଛି ଜାଣିବେ ନାହିଁ । ସମାଲୋଚନାର ପ୍ରଶ୍ନ କାହିଁକି ଉଠିବ ? ବରଂ ମନକଥା ମନରେ ରହିବ ।

ସେ ଶନ୍ତାକର ସ୍ଥିର କଲା—ଏଥିପାଇଁ ତାର ସ୍ତ୍ରୀ ହିଁ କେବଳ ଦାୟୀ । କାରଣ ଗାଁଅଁହାଯାକ ଲୋକଙ୍କର ବିଶ୍ୱାସ— ସ୍ତ୍ରୀ ତାର ଚତୁରୀଇର ଯୋଡ଼ ଶନ୍ଧେ । ତେଣୁ ସେ କ’ଣ ତାର ପିଲା ଦାଇଁଠା ଆଉ ସ୍ୱାମୀଙ୍କର ମେଳ ଚଳ୍ପିପାରିଲା ନାହିଁ ? ଘରେ ତ ଅଭାବ ନାହିଁ । ବେଶିକରି ପିଠା ଦ’ଠା କରିଥିଲେ, ପିଲାମାନେ ମନବୋଧ କରି ଖାଇଲେ ବି ପିଠା ବଳିଥାନ୍ତା । କମ୍ ହୋଇଥିବାରୁ ସିନା ନଅଣ୍ଟ ପଡ଼ିଲା । ଶେଷକୁ ତା ପାଇଁ କିଛି ରହିଲା ନାହିଁ । ଏସବୁ ତାର ସ୍ତ୍ରୀର ବଦ୍‌ମାସୀ । ସେ ଭାବିଲା— ସେ ଏକା ପିଠାକରି ଜାଣେ । ଏ ଗାଁରେ ତା ପରି ଅନେକ ଅଛନ୍ତି । କହିଲେ—ପିଠା କରିଦେବେ । ଏଥିପାଇଁ ସେ କାଲି ଅନ୍ୟ ହାତରେ ପିଠା କରାଇବ । ଘରକୁ ଆଣି ସ୍ତ୍ରୀକୁ ଦେଖାଇ ଖାଇବ । ସ୍ତ୍ରୀ ତାର ବୋକା ନୁହେଁ । କଥାଟା ସେ ଠିକ୍ ବୁଝିପାରିବ । କିନ୍ତୁ ପ୍ରତିବାଦ ବା ଆପତ୍ତିକିଛି କହିବାର ତା’ର ମୁଁ ନ ଥିବ । ଏହାଦ୍ୱାରା ସ୍ତ୍ରୀ ଉପରେ ସେ ପ୍ରତିଶୋଧ ନେବ ।

ସବୁଦିନ ପରି ମୁଖିଆଟି ଖାଇପିଇ ଶୋଇବାକୁ ଗଲା । ମନକଥା ତାର ମନକୁ ଆଲୋଡ଼ନ କରୁଥାଏ । ସେଥିପାଇଁ ସେ ଅତ୍ୟନ୍ତ ଗମ୍ଭୀର । ଚୁପ୍ । ସ୍ତ୍ରୀକୁ ପଦେ କିଛି ବି କହିଲା ନାହିଁ । ବିଛଣାରେ ଶୋଇଗଲା । ସ୍ତ୍ରୀ ତାକୁ ଭଲକରି ଜାଣେ । ସେ ଦେଖିଲା ସ୍ୱାମୀ ଚରିତ୍ରରେ ଆଜି ଏହା ଏକ ବ୍ୟତିକ୍ରମ । ତଥାପି ସେ ବି ତା ସ୍ୱାମୀକୁ ପାଟି ଫିଟାଇଲା ନାହିଁ ।

ପରଦିନ ସକାଳୁ ମୁଖିଆ ଉଠି ତାର ନିତ୍ୟକର୍ମ ସାରିଲା । ମୁଣିଟିଏ ଆଣି ସେଥିରେ ଗୁଡ଼ଜଳ କିଛି ପୁରାଇଲା । ତାପରେ ତାକୁଧରି ସେ ଘରୁ ବାହାରିଲା । ସକାଳୁ ନ ଖାଇଲେ ମୁଖିଆ ଘରୁ ଗୋଡ଼ କାଢ଼େ ନାହିଁ । ତାର ସ୍ତ୍ରୀ ଏକଥା ଜାଣେ । ତେଣୁ

ସ୍ତ୍ରୀ ତାର ପଚ୍ଚାରିଲା—"ଅଣଖିଆ ଅପିଆ କୁଆଡ଼େ ବାହାରିଲ ? ପୁଣି ଏତେ ସକାଳୁ ?"

ମୁଖିଆ କିଛି ଉତ୍ତର ଦେଲା ନାହିଁ । ସେ ପଛକୁ ବି ଅନାଇଲା ନାହିଁ । ଦ୍ରୁତ ପଦରେ ଘରୁ ଚାଲିଗଲା ।

ପ୍ରଥମେ ବାଟରେ ଗୋଟିଏ ଚାଷୀ ଘର ପଡ଼ିଲା । ସେ ଚାଷୀଟି ଗରିବ । ମୂଲଲାଗି ପେଟ ପୋଷେ । ସ୍ତ୍ରୀ ବି ତାର ପରଘରେ କାମ କରେ । ଚାଷୀ ଦୁଆରେ ମୁଖିଆ ଅଟକି କରି ଭାବିଲା—ଏମାନଙ୍କୁ ଚାଉଳ ଦେଇ ପିଠା କରିବାକୁ କହିଦ ଦେଲେ, ଏମାନେ କଥା ରଖିବେ । ପିଠା କରିଦେବେ । କିନ୍ତୁ ସବୁ ଗରିବମାନଙ୍କ ପରି ଏମାନଙ୍କ ପ୍ରକୃତି ଶ୍ରେଷ୍ଠ ହୋଇଥିବ । ସବୁ ଚାଉଳରେ ଏମାନେ କେବେହେଲେ ପିଠା କରିବେ ନାହିଁ । କିଛି ଖେଣ୍ଟିଦେବେ । ଯଦି ସବୁ ଚାଉଳରେ ପିଠା କରିବେ, ସବୁ ପିଠା ବି ସେମାନେ ତାକୁ ଦେବେ ନାହିଁ । କିଛିଟା ଆତ୍ମସାତ କରିବେ । ପଙ୍କରେ ପଶିଲେ ସିନା ଗୋଡ଼ ଧୋଇବାକୁ ହେବ ! ଯେତେ ଧୋଇଲେ ବି ସବୁ ପଙ୍କ ଛାଡ଼ିବ ନାହିଁ । ସେ ଆଉ ସେଠି ଅପେକ୍ଷା କଲା ନାହିଁ । ଉଗ ଉଗ ହୋଇ ଆଗକୁ ଚାଲିଲା ।

ସେଇମିତି ଚାଷୀଘର କେତେଟା ପାରହୋଇ ମୁଖିଆ ଗୋଟିଏ ଧନୀଘର ପାଖରେ ପହଞ୍ଚିଗଲା । ଧନୀଟିର ଦୋତାଲା ଘର । ତଳମହଲଟି ପକ୍କା । ଉପର ଘର ଟାଇଲ୍ । ଲୋକଟି ସୁଧରେ ଟଙ୍କା କରଜ ଦିଏ । ସ୍ତ୍ରୀ ତାର ବେଶ୍ ମେଳାପି । ପାଣିରେ ସର ପକାଇ ଦେବାରେ ଧୁରନ୍ଧର । ସେସବୁ ମୁଖିଆ କାନରେ ପଡ଼ିଛି । ସେ ଭାବିଲା—ଏମାନଙ୍କୁ ଚାଉଳ ଦେଲେ, ପିଠା କରିବାକୁ ନାହିଁ କରିବେ ନାହିଁ । ଚାଉଳ ଖେଣ୍ଟିବା ବା ପିଠା

ଆତ୍ମସାତ କରିବାର ପ୍ରଶ୍ନ ବି ନାହିଁ । ଧମାଟିର ଦାଣ୍ଡ କବାଟ ମେଲିଥିଲା । ମୁଖିଆ ଧମା ଲୋକର ନାଁ ଡାକ ଘରେ ପଶିଲା ।

ସେତ ଗାଁ'ର ମୁଖିଆ । କାଳେ ନାହିଁ କି ଯୁଗେ ନାହିଁ । ଆଜ ସେ ତାଙ୍କ ଘରକୁ ବିନା ଆମନ୍ତ୍ରଣରେ ଆସିଛି । ଏହା ଦେଖି ଧମା ଲୋକ ଓ ତାର ସ୍ତ୍ରୀ ତା ପାଖକୁ ଧାଇଁ ଆସିଲେ । ଆଦର କଲେ । ସମ୍ମାନ ଦେଇ କୁଆଡ଼େ ଆସିଲ ବୋଲି ପଚାରିଲେ ।

ସେ ତ ମାମଲତ୍‌କାର ଲୋକ । ବେଶୀ କହିବା ତାର ଢଙ୍ଗ ନୁହେଁ । ଆଦେଶ ଦେବାଟା ତାର ଅଭ୍ୟାସ । ବିନା ମୁଖବନ୍ଧରେ ସେ ଧମାଲୋକକୁ କହିଲା—"ଏଇ ଚାଉଳତକ ନିଅ । ଏଥିରେ ଆରିଷା ପିଠା ପାଞ୍ଚଟା କରିଦେବ । କାଲି ସକାଳେ ଆସି ପିଠାତକ ନେବି ।"

ଏଇ କଥାରୁ ଧମାଲୋକ କିଛି ଠଉରାଇ ପାରିଲା ନାହିଁ । ସେ ଆବାକାବା ହୋଇ ମୁଖିଆର ମୁହଁକୁ ଚାହିଁ ରହିଲା । ଧମାଲୋକର ସ୍ତ୍ରୀଟି ବେଶ୍ ଚାଲାକ । ସେ ଆସି ମୁଖିଆ ହାତରୁ ଚାଉଳ ମୁଣି ନେଇଗଲା । ତାପରେ ସେ କହିଲା—"ତମେ ଆମ ଗାଁର ମୁଖିଆ । ଆମର ବିପଦ ଆପଦକୁ ତମେ ଆମର ସାହା । ତମର ଏତିକି କାମ ଆମେ କରିପାରିବୁ ନାହିଁ ? କାଲି ସକାଳେ ଆସ । ପିଠା ହୋଇ ସାରିଥିବ, ନେଇଯିବ ।"

ଏକଥା ଶୁଣି ମୁଖିଆର ମନ କୁଣ୍ଢେ ମୋଟ । ସେ ଭାବିଲା—ଯାହାହେଉ ଏତେଦିନକେ ସ୍ତ୍ରୀଲୋକଟିଏ ଦେଖିଲି । ଆଉ ସେଠି ଠିଆ ନ ହୋଇ ସିଧା ଘରକୁ ଫେରିଲା ।

ସେଦିନ ରାତିରେ ମୁଖିଆର ଜମା ନିଦ ହେଲା ନାହିଁ । ମନ ତାର ଚଞ୍ଚଳ । ଥରକୁ ଥର ନିଦ ଭାଙ୍ଗିଲା । ସକାଳ ହେବା

ପୂର୍ବରୁ ସେ ଉଠିପଡ଼ି ନିତ୍ୟକର୍ମ ସାରିଲା । ତାର ମନଟ ଯାଇ ପିଠାରେ । ସେ ସ୍ତ୍ରୀକୁ ତାର କିଛି ନ କହି ବାହାରି ପଡ଼ିଲା ।

ବ'ଟା ଖାଇଦେଇ ଯାଅ, ସ୍ତ୍ରୀ ଅନୁରୋଧ କଲା । ମୁଖିଆ ନିରୁତ୍ତର । ସ୍ତ୍ରୀକୁ ଅନାଇଲା ନାହିଁ । ଧନୀ ଘରକୁ ସିଧା ଚାଲିଲା ।

ମୁଖିଆର ମନ ତ ଉଚ୍ଛନ୍ନ । ସକାଳୁ ସକାଳୁ ପିଠାତକ ମିଳିଯିବ । କେମିତି ଭାବରେ ସେ ତାର ସ୍ତ୍ରୀକୁ ଦେଖାଇ ଖାଇବ ଆଉ କ'ଣ କହିବ, ସେଇଟା ତାର ଚିନ୍ତା । ବାଉନ୍ନଆଉ ବାଉନ୍ନ କଥା ସେ ଭାବୁଥାଏ । ଭାବୁଭାବୁ ସେ ଆସି ଧନୀଲୋକର ଦୁଆର ମୁହଁରେ ପହଞ୍ଚିଲା । କବାଟ ଖୋଲିଥିଲା । ସେ ଘରେ ପଶିଲା । ଧନୀ ଲୋକଟିର ଦେଖା ନାହିଁ । ସେ ଦାଣ୍ଡଘରେ ଟିକଏ ଠିଆ ହୋଇଛି, ଧନୀଲୋକର ସ୍ତ୍ରୀ ଆସି ପହଞ୍ଚିଗଲା । ମୁହଁରେ ତାର ହସ । ସେ ମୁଖିଆକୁ ସ୍ୱାଗତ ଜଣାଇଲା । ଡାକନେଇ ଘରେ ବସାଇଲା । ଅଳ୍ପ ଦୂରରେ ସେ ନିଜେ ବସିଲା । ଗାଁ'ର ମୁଖିଆ ସେ । ସବୁ ସ୍ତ୍ରୀ ଲୋକ ତାକୁ ସଙ୍କୋଚ କରନ୍ତି । ଧନୀଲୋକ ସ୍ତ୍ରୀଟିର ସଙ୍କୋଚ ତା ପାଖରେ ଜମା ନ ଥିଲା । ମୁଖିଆକୁ ଏହି ସ୍ତ୍ରୀ ଲୋକର ଢଙ୍ଗ ଭଲ ଲାଗିଲା ନାହିଁ । ବରଂ ତାର ଏ ଢଙ୍ଗ ଦେଖି ମୁଖିଆକୁ ସଙ୍କୋଚ ଲାଗିଲା ।

ସ୍ତ୍ରୀଲୋକ ପାଖରେ ବସି ଆଳାପ କରିବା ତା' ପକ୍ଷେ ସୁନ୍ଦର ନୁହେଁ । ଏକଥା ସେ ଜାଣିଥିଲା । ଉପରେ ପଡ଼ି ସେ ଧନୀ ଲୋକର ଘରେ ପିଠା କେତେଟା ବରାଦ ଦେଇଛି । ତାକୁ ନବାପାଇଁ ଆସିଛି । ତେଣୁ ସେ ନିରୁପାୟ । ସ୍ତ୍ରୀ ଲୋକର ଢଙ୍ଗଢାଙ୍ଗକୁ ସହିବାକୁ ସେ ବାଧ୍ୟ ।

ଆସନରେ ଭଲଭାବରେ ବସିବା ପରେ ସ୍ତ୍ରୀଲୋକଟି ଆରମ୍ଭ କଲା—"ତମ ଗୃହଳରେ ମୁଁ କାଲି ରାତରେ ପିଠା କରିଥିଲି । ସମୁଦାୟ ପଚାଶଟି ପିଠା ହେଲା ।"

ଏକଥା ଶୁଣି ବୁଢାମାନେ କୁରୁକୁଳେଇଲା । ସଙ୍କୋଚ ତା' ମନରୁ ଉଭେଇ ଗଲା । ମୁହଁରେ ତାର ହସର ଆଭାସ । ସେ ଏତେ ଖୁସି ହୋଇ ଯାଇଥିଲା ଯେ ପାଟିରୁ ତାର ଆପେ ଆପେ ବାହାରି ଆସିଲା—"ପଚାଶ ।"

ଗୃହିଣୀ ତା ପାଟିରୁ କଥା ଛଡ଼ାଇ ନେଇ କହିଲା—"ହଁ, ହଁ, ପଚାଶ । ଖାଲି ସେତିକି ନୁହେଁ ସେ ସବୁ ବେଶ୍ ବଡ଼ବଡ଼ ।"

ଏକଥା ଶୁଣି ବୁଢ଼ା ଆହୁରି ଖୁସି । ସେ କହିଲା—"ବେଶ୍ କଲ । ପିଠା ଯେ କରିଜାଣେ, ସିଏ ସିନା କରିବ । ସମସ୍ତେ କ'ଣ ତାର ଭାଗମାପ ପାଇବେ ?"

ଧନୀ ଲୋକର ସ୍ତ୍ରୀ କହିଲା—"ପିଠା ସିନା ହେଲା, ସେଥିପାଇଁ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଲା । ମୁଁ ଝାଳନାଳ ହୋଇଗଲି ।"

"ବିନା ପରିଶ୍ରମରେ କିଛି କାମ ହୋଇପାରେ ନାହିଁ । ଖୁବ୍ ପରିଶ୍ରମ ତୁମେ ମୋ ପାଇଁ କଲ । ସେଥିପାଇଁ ତମକୁ ଧନ୍ୟବାଦ ।" ମୁଖିଆର ଉତ୍ତର ଥିଲା ।

"ପରିଶ୍ରମ ଯେ କରେ, ସେ ପାରିଶ୍ରମିକ ପାଏ । ମୋ ପରିଶ୍ରମ ପାଇଁ ମୁଁ ଦଶଟି ପିଠା ସେଥିରୁ ରଖିଛି ।"

"ଏତେ ଖଟିଲ । ଦଶଟି ପିଠା ରଖିବ ନାହିଁତ ଆଉ କ'ଣ କମ ନିଅନ୍ତ ? ପିଲାଛୁଆ ଘର । ଘରେ ପିଠା ହୋଇଛି ସମସ୍ତଙ୍କର ଲାଳସା ଥିବ । ଦଶଟି ପିଠା କ'ଣ ବେଶୀ ହୋଇଗଲା । ତମେ

ବୋଲି ଏତେ କମ ପିଠା ନବାପାଇଁ କହୁଛ । ରଖ । ଦଶଟି ପିଠା ରଖ ।” ମୁଖିଆ ତାର ମାମଲତକାର ଢଙ୍ଗରେ କହିଲା ।

"ପିଠାତ ଖାଲି ଚୁଉଲରେ ହୁଏ ନାହିଁ । ସେଥିପାଇଁ ତେଲ୍ ଗୁଡ଼ ଦରକାର । ତୁମେ ତ ସେ ସବୁ ଦେଇ ନ ଥିଲ । ମୋତେ ସେ ସବୁ କିଣିବାକୁ ପଡ଼ିଲା । ଏଇ ଖର୍ଚ୍ଚ ବାବତକୁ ଦଶଟି ପିଠା ତୁମେ ମୋତେ ଦେବ ।”

ମୁଖିଆ ଦେଖିଲା—ସମୁଦାୟ ପଚଶଟି ପିଠା ହୋଇଛି । ଗୃହିଣୀଟି ସେଥିରୁ କୋଡ଼ିଏଟି ପିଠା ନେବ ବୋଲି କହିଲାଣି । ସ୍ତ୍ରୀଲୋକ ସେ । ତା’ ସାଥୀରେ ପ୍ରତିଦ୍ୱନ୍ଦ୍ୱ କରିବାଟା ଭଲହେବ ନାହିଁ । ସେ ତ ପାଞ୍ଚଟି ପିଠା ବଳିଦ ଦେଇଥିଲା । ଯେମିତି ହେଲେ ତାର ପାଞ୍ଚଟି ପିଠା ରହିଯାଉଛି । ତାର ଏଥିରେ କ୍ଷତି ହେଉନାହିଁ । ପ୍ରତିବାଦ ନ କରି ସେ କହିଲା—"ତମେ ମୋ କଥା ରଖି ପିଠା କଲ ବୋଲି ହାତରୁ ତୁମେ କ’ଣ ମୋପାଇଁ ଖର୍ଚ୍ଚ କରିବ ? ନିଅ, ସେଥିପାଇଁ ତୁମେ ଦଶଟା ପିଠା ନିଅ ।”

ଧର୍ମାଲୋକଟି ସ୍ତ୍ରୀ ତାପରେ କହିଲା—"ତମେ ତ ଦେଖୁଛ, ଏଇନେ କାଠ କେତେ ମହରଗ । ସେ ପୁଣି ସହଜରେ ମିଳୁ ନାହିଁ । ପିଠା କରିବା ପାଇଁ ମୋତେ ଜାଳ କିଣିବା ପାଇଁ ପଡ଼ିଲା । ଯେଉଁ ପଇସା ଦେଇ ମୁଁ କାଠ କିଣିଲି ସେଥିପାଇଁ ତମକୁ ଦଶଟି ପିଠା ଦେବାକୁ ପଡ଼ିବ । ତମ ଚାଉଳରେ ସମୁଦାୟ ପଚିଶି ପିଠା ହେଲା । ପିଠା କରିବା ପାଇଁ ମୋର ତିରିଶି ପିଠା ପ୍ରାପ୍ୟ । ତମ ପିଠାତକ ସେଥିରୁ କଟିଗଲେ ତମକୁ ମୋତେ ଆଉ ପାଞ୍ଚଟି ପିଠା ଦେବାକୁ ହେବ । ତମ ଉପରେ ମୋର ପାଞ୍ଚଟା ପିଠା ରହିଲା । ତମେ ତ ଗାଁର ମୁଖିଆ । ମୋତେ

ତମର ଠକବାର ପ୍ରଶ୍ନ ଉଠୁ ନାହିଁ । ତାଛଡ଼ା ମୋର ବି ତମକୁ ଅବିଶ୍ୱାସ ନାହିଁ । ତେଣୁ ସୁବିଧା କରି ପାଞ୍ଚଟି ପିଠାଆଣି ମୋତେ ଦେଇଯିବ ।”

ମୁଖିଆ ଭାବିଲା—ସେ ବଡ଼ଜାଗାକୁ ଯାଇଛି । ନ୍ୟାୟ କରିଛି । ତା ବିଚାରରେ ଲୋକେ ସନ୍ତୁଷ୍ଟ ହୁଅନ୍ତି । କେହି କେବେ ତାଙ୍କୁ ଠକି ଭୂଆଁ ବୁଲାଇବା କଥା ତାର ମନେ ପଡ଼ୁନାହିଁ । ଗୁରୁ ସ୍ତ୍ରୀଲୋକଟାଏ । ପିଠା କରିଛି କି ନାହିଁ ଜଣା ନାହିଁ । କିନ୍ତୁ ବିନା ପରିଶ୍ରମରେ ତା’ଠାରୁ ପାଞ୍ଚଟି ପିଠା ସେ ନେବ ବୋଲି ଅଳି କଲାଣି । ଯେଉଁ ଗୁଣ୍ଡିଳ ସେ ଦେଇଥିଲା, ସେହି ଗୁଣ୍ଡିଳକୁ ସେ ବାଏଁ ବାଏଁ ଉଡ଼ାଇ ଦେଲା । ଏହାକୁ କହନ୍ତି ବୁଦ୍ଧି । ଯାହାହେଉ ସେ ତ ବେଶ୍ ଅପଦସ୍ତ ହେଲାଣି । ସ୍ତ୍ରୀକୁ ପାନେ ଦେବବୋଲି ଆସିଥିଲା ସିନା, କିନ୍ତୁ ବେଶ୍ ପାନେ ସେ ପାଇଗଲା ।

ମୁଖିଆ ମନେ ମନେ ଖୁବ୍ ରାଗିଗଲା । ସ୍ତ୍ରୀ ଲୋକକୁ ପଦେ କଥା ବି କହିଲା ନାହିଁ । ତମ ତମ ହୋଇ ସେ ପଦାକୁ ବାହାରି ଆସିଲା । ସେ ଘରକୁ ସିଧା ବାହୁଡ଼ିଲା । ମନ ତାର ଖରାପ ହୋଇଥିଲା । ସେଥିପାଇଁ ମୁଣ୍ଡ ତାର ଆଗକୁ ଝୁଲି ପଡ଼ିଲା ।

ଧର୍ମଲୋକ ଘରକୁ ଗଲାବେଳକୁ ପ୍ରଥମେ ଯେଉଁ ସ୍ତ୍ରୀ ଦୁଆରେ ମୁହଁରେ ସେ ଅଟକି ଥିଲା, ତାର ଫେରନ୍ତା ବାଟରେ ସେ ସେଇଠି ପହଞ୍ଚିଗଲା । ବାରଣ୍ଡାରେ ସ୍ତ୍ରୀଟି ବସିଥିଲା । ତେଣୁ ମୁଖିଆଟିର ଏ ଅବସ୍ଥା ଦେଖି ସ୍ତ୍ରୀଟିର ଦୟାହେଲା । ସେ ବାରଣ୍ଡା ତଳକୁ ଓହ୍ଲାଇ ପଡ଼ି କହିଲା—“ଭାଇ, ଅଳ୍ପ ସମୟ ତଳେ ତୁମେ ଏଇ ବାଟରେ ହସହସ ମୁହଁରେ

ଯାଉଥିଲ । କ'ଣ ହେଲା ? ଏପରି ମନଦୁଃଖରେ କାହିଁକି ଫେରିଲ ?"

ମୁଖିଆ ମନରେ ତ ବହୁତ କ୍ଷୋଭ । ରାଗରେ ତାର ହାଡ଼ ଜଳୁଥାଏ । ସ୍ତ୍ରୀଟିର ସ୍ନେହ ଓ ଆହ୍ଲାଦ କଥା କେଇପଦରେ ତାର ଜମାଟବନ୍ଧା ରାଗ ତରଳିଗଲା । ତାର ମନର କଥାକୁ ସେ ଆଉ ଅଟକାଇ ପାରିଲା ନାହିଁ । ଗଳଗଳ ହୋଇ ସେସବୁ ବାହାରି ଆସିଲା । ସେ ଜଣେ ମାମଲତକାର ଲୋକ । ନିଜର ଅନୁଭୂତି ଓ ଅପଦସ୍ତତା ଲୁଚାଇ ରଖିବାର କଥା । ସେଇ ହିତବାକ୍ୟ ସବୁ ସେଇ ମୁହୂର୍ତ୍ତରେ ସେ ପାଶୋରି ଗଲା । ସେ ଘରଆଡ଼କୁ ନ ଯାଇ ସ୍ତ୍ରୀର ବାରଣ୍ଡାକୁ ଉଠିଲା । ଆସନ ଖୋଜିଲା ନାହିଁ । ସେଇଠି ବସିପଡ଼ି ସ୍ତ୍ରୀଟିର ଆଗରେ ସବୁକଥା ଗୋଟି ଗୋଟି କରି କହିଗଲା ।

ମୁଖିଆର କଥାଶୁଣି ସ୍ତ୍ରୀ ଆଶ୍ଚର୍ଯ୍ୟ । ଏକଥା ସେ ଜମା ବିଶ୍ୱାସ କଲା ନାହିଁ । ମୁଖିଆ ତାର ଦେହଛୁଇଁ କହିଲା— "ମୋତେ ବିଶ୍ୱାସ କର । ମୁଁ ଯାହା କହୁଛି ସତ ।" ଏକଥା ଶୁଣି ସ୍ତ୍ରୀଟି କହିଲା—"ଏକରେ ତୁମେ ତାର ପଡ଼ୋଶୀ, ହିସାବରେ ତୁମେ ଯେ ଗାଁ'ର ମୁଖିଆ । ସ୍ତ୍ରୀଲୋକ ଯାହା କଲା, ତା'ର ସ୍ୱାମୀ ସେ ସବୁ ନ ଜାଣିବାର ପ୍ରଶ୍ନ ଉଠୁ ନାହିଁ । ନଇଲେ ସ୍ତ୍ରୀଲୋକଟିର ଏତେ ସାହାସ ହୋଇ ନ ଥାନ୍ତା ! ଏହାତ କମ କଥା ନୁହଁ । ଏହା ଦିନ ଦି'ପହରେ ଆଖିରେ ଆଙ୍ଗୁଠି ଗେଞ୍ଜି ଡକାୟତି କରିବା କଥା ।"

କଥାଟା ଗାଁ'ବାଲାଙ୍କୁ ଡାକି ପକାଇଲେ ହୁଅନ୍ତା । କଥା ପକାଇଲେ, ତମକୁ ଲୋକେ ବୋକା ବୋଲି ଭାବିବେ । ବରଂ

ଏଥିରେ ତମର ମାନସମ୍ମାନ ଜଡ଼ିତ । ତୁମେ ଚୁପ୍ ହୋଇ ବସ । ଭବିଚନ୍ତ ଗୋଟେ ବାଟ କରିବା । ଧନ ଅଛି ବୋଲି ମଣିଷପଣିଆ ହରେଇବା ଉଚିତ୍ ନୁହଁ । ଆମେ ତାଙ୍କୁ ପାନେ ଦେବା । କାଳକାଳକୁ କଥା ରହିବ ।"

ମୁଖିଆଟି କହିଲା—"ପୃଥିବୀରେ ଧନ ଏକ ମାରାତ୍ମକ ନିଶା । ଥରେ ସେ ନିଶାର ଶୀକାର ହେଲେ ମଣିଷ ମଣିଷ ହୋଇ ରହେ ନାହିଁ । ତାର ଆଖିରେ ଧନ ଖାଲି ନାଚେ । ଅନ୍ୟକୁ ଠକାଇବାକୁ ସେ ପଛାଏ ନାହିଁ । ଏମିତିକି ନିଜଲୋକଙ୍କୁ ସେ ବାଦ୍ ଦିଏ ନାହିଁ । ତା ପକ୍ଷରେ ମିତ ଅମିତ ଏକ । ଧନ ସମ୍ପତ୍ତି ଠୁଳ କରିବାରେ ସେ ଲାଗିଯାଏ । ସେଇଟା ହିଁ ତାର ଧର୍ମ । ସେଥିପାଇଁ ପରର ଯେଉଁ କ୍ଷତି ହୁଏ, ସେ ଆଡ଼କୁ ତାର ନିଘା ନ ଥାଏ । ପରକୁ ଠକିବାର ଯେଉଁ ଦୁଃସାହାସ, ତାହା ମଣିଷ ଭିତରେ ଥରେ ସୃଷ୍ଟି ହେଲେ ସେ ବଢ଼ିଚାଲେ । ସେ ମଣିଷଖିଆ ବାଘ ହୋଇଯାଏ । କାହାକୁ ସେ ଡରେ ନାହିଁ । ଭୟଭ୍ରାନ୍ତି ବି ଚାଲିଯାଏ । ମୁଁ ଧନୀ ଲୋକଟିର ସ୍ତ୍ରୀର ଢଙ୍ଗଢାଙ୍ଗରୁ ଏହାହିଁ ଦେଖିଲି । ତାକୁ ପାନେ ନ ଦେବା ପର୍ଯ୍ୟନ୍ତ ମନରେ ମୋର ଶାନ୍ତି ରହିବ ନାହିଁ ।"

ବୃଦ୍ଧୀଟି ମୁଖିଆର କଥାଶୁଣି ଟିକିଏ ପାଖକୁ ଲାଗିଆସି ଚୁପ୍‌ଚୁପ୍ କହିଲା—"ଠିକ୍ ଅଛି । ତୁମେ ପାରିବ ?"

"ହଁ, ପାରିବି । କ'ଣ କରିବାକୁ ହେବ ତୁ ଆଗ କହ ।" ମୁଖିଆ କହିଲା ।

ବୃଦ୍ଧୀଟି କହିଲା—"ଧନୀଲୋକ ସ୍ତ୍ରୀର ଗୋଟିଏ ପ୍ରେମିକ ଅଛି । ଧନୀଲୋକ ଯେଉଁ ରାତିରେ କୁଆଡ଼େ ଯାଏ ସେଦି

ରାତରେ ସେ ଆସେ । ଧର୍ମ ଲୋକର କବାଟ ମୁହଁରେ ଠକ୍‌ଠକ୍ କରେ । ଘର ଭିତରୁ ଶବ୍ଦ ଆସେ କିଏ ? ସେ ଲୋକଟି ଉତ୍ତର ଦିଏ ନାହିଁ । ହୁଁ ଟିଏ ମାରେ । ଧର୍ମଲୋକର ସ୍ତ୍ରୀ ଆଲୁଅ ଲଗାଇ ଦିଏ । କବାଟ ଖୋଲେ । ସେ ଲୋକକୁ ଘର ଭିତରକୁ ନେଇଯାଏ । ଆଜି ଧର୍ମଲୋକଟି ବାହାରକୁ ଯିବାର ଅଛି । ତୁମେ ସନ୍ଧ୍ୟା ପହରରେ ତାର ଦାଣ୍ଡ ଦୁଆରରେ ଠକ୍‌ଠକ୍ କରିବ । ସ୍ତ୍ରୀଲୋକ କବାଟ ଖୋଲିଲେ, ତୁମେ ଘର ଭିତରକୁ ଯିବ । ସେ ତ ପିଠା ତାର ପ୍ରେମିକ ପାଇଁ ରଖିଥିବ । ତାକୁ ତମକୁ ଖାଇବାକୁ ଦେବ । ତୁମେ ସେତକ ଉଦରସ୍ଥ କରି ଖସି ପଳାଇ ଆସିବ । ତମକୁ ସ୍ତ୍ରୀ ଲୋକଟି ଚିହ୍ନିଲେ ବି ଅସୁବିଧା ତମର ହେବନାହିଁ । ତୁମେ କହିବ, ମୋ ଉପରେ ଥିବା ପିଠା ଦେବାକୁ ମୁଁ ଆସିଛି ।”

କଥାଟା ମୁଖିଆ ମନକୁ ପାଇଲା ସତ, ହେଲେ ତାରି ତ ଲୋକଲଜ୍ଜା ଅଛି । କଥାଟା ପଦାରେ ପଡ଼ିଲେ ଭାରି ଅସୁବିଧା । ବୃଷୀ କଥାରେ ରାଜି ସିନା ହୋଇଗଲା, ତାକୁ କାର୍ଯ୍ୟକାରୀ କରିବାକୁ ମନର ଯେଉଁ ବଳ ଦରକାର,, ତାର ଅଭାବ ସେ ଅନୁଭବ କଲା । ସେଥିପାଇଁ ସେ କୁଣ୍ଠୁ କୁଣ୍ଠୁ ହେଉଥିଲା ।

ବୃଷୀଟି ମୁଖିଆର ମନଗଣ୍ଠିରୁ ସେ କଥା ଠଉରାଇଲା । ତେଣୁ ସେ କହିଲା—“ସବୁକାମ ପାଇଁ ସାହାସ ଲୋଡ଼ା । ଯେସାକୁ ତେସା ନକଲେ, ସଂସାରରେ ଚଳିବା ମୁସ୍କିଲ । ମନକୁ ଥୟ କର । ଦମ୍ଭ ଧର । କଠିନ ହୁଅ । ପାନେ ଦିଅ । ଦେଖିବ ଏପରି କାମ କରିବାକୁ ଆଉ କେବେ ଧର୍ମଲୋକ ଓ ତାର ସ୍ତ୍ରୀ ମନବଳାଇବେ ନାହିଁ ।”

ମୁଖିଆ ଗମ୍ଭୀର ହୋଇ ବେଶ୍ କିଛି ସମୟ ଭାବିଲା । ତାପରେ ପାରିବ ବୋଲି କହି ଘରକୁ ଚାଲିଗଲା ।

ମନଭାରି ଲାଗିଛି । ସେଦିନ ରାତି ଟିକିଏ ହେବାପରେ ସେ ଘରୁ ବାହାରି ପଡ଼ିଲା । ସେତେବେଳକୁ ଗାଁ’ ଦାଣ୍ଡ ଶୁନଶାନ୍ । କେହି କେଉଁଠି ନ ଥିଲେ । ଏଇ ମଉକା ଦେଖି ସେ ସିଧା ଆସି ଧନୀ ଲୋକର ଦୁଆରେ ହାଜର । ଘରେ ଆଲୁଅ ଜଳୁଥିଲା । ଦୁଆର ମୁହଁରେ ଛିଡ଼ାହେଲା । ତାପରେ ସେ ଦାଣ୍ଡ କବାଟରେ ଠକ୍‌ଠକ୍ କଲା । ଘର ଭିତରୁ ଧନୀଲୋକର ସ୍ତ୍ରୀ ପଚାରିଲା—“କିଏ ?” ମୁଖିଆ ହୁଁ ମାରିଲା । ସାଥିସାଥି ଘରର ଆଲୁଅ ଲିଭିଗଲା । ଦାଣ୍ଡ କବାଟ ଖୋଲା ହୋଇଗଲା । ମୁଖିଆ ଘରେ ପଶିଲା । ଧନୀଲୋକର ସ୍ତ୍ରୀ ତାକୁ ଟାଣିନେଲା । ଗୋଟିଏ ଜାଗାରେ ବସାଇ ଖାଇବାକୁ ପିଠାଦେଲା । ପିଠାଖିଆ ତାର ସରିନାହିଁ, ବାହାରେ ଠକ୍‌ଠକ୍ ଶବ୍ଦ ହେଲା । ଶବ୍ଦଶୁଣି ମୁଖିଆ ଥଙ୍କିଆ । ରକ୍ତ ତାର ଶୁଖିଗଲା । ସ୍ତ୍ରୀଲୋକଟି ମୁଖିଆ ପାଖକୁ ଲାଗିଆସି କହିଲା—“ବ୍ୟସ୍ତ ହୁଅନାହିଁ । ଖାଇସାର । ମୁଁ ସବୁ ବ୍ୟବସ୍ଥା କରିଦେବି ।”

ମୁଖିଆର ଖିଆ ସରିଲା । ତାକୁ ଧରି ସ୍ତ୍ରୀଲୋକଟି ଘରର ଉପରକୁ ନେଇଗଲା । ତାକୁ ଗୋଟିଏ କଣରେ ବସାଇଦେଇ ତଳ ମହଲାକୁ ଆସି ପଚାରିଲା—“କିଏ ?”

“ହୁଁ” କହି ବାହାର ଲୋକଟି ଜବାବ ଦେଲା । ସ୍ତ୍ରୀଲୋକଟି କବାଟ ଖୋଲିଲା । ମୁଖିଆ ତାର ଲୁଚିବା ଜାଗାରୁ ଛିଡ଼ ପାଖକୁଆସି ଉଣ୍ଡି ଥିଲା । ସେତେବେଳକୁ ଜହ୍ନ ଉଠିଲାଣି । ସେଇ ଜହ୍ନ ଆଲୁଅରେ ମୁଖିଆ ଦେଖିଲା—ସେଇ ଆରିବ ବ୍ୟବସାୟୀ ସେଠି ଉପସ୍ଥିତ ।

ସ୍ତ୍ରୀଲୋକଟି ତାକୁ ଘରକୁ ଆଣିଲା । ତାକୁ ବି ଖାଇବାକୁ ପିଠା ଓ ପିଇବାକୁ ପାଣିଦେଲା । ତାର ଖିଆସରି ନାହିଁ,

ବାହାର କବାଟରେ ଧକ୍କାର ଶବ୍ଦ । ସେ ଶବ୍ଦ ଶୁଣି ଆରବ ବ୍ୟବସାୟୀ ଖୁବ୍ ଛନିଆ । ଖାଇବା ଜାଗାରୁ ଯାଇ କବାଟକୁ ମାଡ଼ି ବସିଲା । ପାଖକୁ ଯାଇ ସ୍ତ୍ରୀଲୋକଟି ଅତି ଧୀରସ୍ଥିର ସ୍ୱରରେ କହିଲା—"ଭୟ କରନାହିଁ । ବ୍ୟସ୍ତ ହେବାରେ କିଛି ଲାଭ ନାହିଁ । ପିଠାତକ ଖାଇଦିଅ ।"

ଆରବ ବ୍ୟବସାୟୀ କବାଟ ପାଖରୁ ଫେରିଗଲା । ପିଠାତକ ଖାଇ ପାଣି ପିଇଲା । ତାକୁ ନେଇ ସ୍ତ୍ରୀଲୋକଟି ମୁଖିଆ ଯେଉଁ କଣରେ ବସିଥିଲା ତାର ବିପରୀତ କଣରେ ବସାଇଦେଲା ।

ଏହା ଭିତରେ କବାଟ ବହୁଥର ଧଡ଼୍‌ଧଡ଼୍ ହୋଇଗଲଣି । ଏଥର ସ୍ତ୍ରୀଲୋକଟି ତଳକୁ ଯାଇ ଆଲୁଅ ଲଗାଇଲା । କବାଟ ଖୋଲିଲା । ଧନୀ ଲୋକଟି ଘରେ ପଶୁ ପଶୁ କହିଲା—"ମୁଁ ବହୁ ବେଳୁ ଆସି କବାଟ ବାଡ଼େଉଛି । ତମକୁ କି ନିଦ !"

ସ୍ତ୍ରୀଲୋକଟି ନିରୁତ୍ତର । ପାଣିଢାଳେ ଆଣି ଗୋଡ଼ ଧୋଇବାକୁ ତାର ସ୍ୱାମୀକୁ ଦେଲା । ଧନୀ ଲୋକଟି ହାତଗୋଡ଼ ଧୋଇଆସି ବସିଲା । ସ୍ତ୍ରୀଲୋକଟି ତା' ଆଗରେ ଖାଇବାକୁ ବାଢ଼ିଲା । ସ୍ୱାମୀ ସ୍ତ୍ରୀ ଉଭୟେ ଖାଇଲେ । ତା'ପରେ ଆଲୁଅ ଲିଭାଇ ଶୋଇବାକୁ ଗଲେ ।

ସେମାନଙ୍କୁ ନିଦ ହୋଇଗଲା । କିନ୍ତୁ ମୁଖିଆଟି ସେହି କଣରେ ବସିଥାଏ । ନିଦ ବି ତା' ଆଖିକୁ ଆସୁ ନ ଥାଏ । ମନରେ ତାର ଘୋର ଡର । କେମିତି ଏଠୁ ସେ ମୁକୁଳିବ । ସେଇତ ତାର ଚିନ୍ତା । ସେଥିଲାଗି ସେ ଅସ୍ଥିର । ଇତ୍ୟବସରରେ ତାକୁ ଘୋର ଶୋଷ ହେଲା । ଛାତି ଫାଟିଗଲା ଭଳି ଲାଗିଲା । ସେ ଆଉ ସମ୍ଭାଳି

ପାରିଲା ନାହିଁ । ପାଣି···ପା···ଣି ବୋଲି ଧିରେଧିରେ ତା' ପାଟିରୁ ଦାହାର ଆସିଲା ।

ଏ ଶବ୍ଦ ଶୁଣି ସ୍ୱାମୀର ନିଦ ଭାଙ୍ଗିଗଲା । ସେ ତାର ସ୍ତ୍ରୀକୁ ପଚାରିଲା—"ଉପର ମହଲାରେ କିଏ ପାଣିପାଣି କହୁଛି ।"

ସ୍ତ୍ରୀଲୋକଟି କିଛି ନ ଜାଣିଲା ପରି କହିଲା—"ତୁମେ ଶୋଉନ କାହିଁକି ? କିଏ ଆଉ ପାଣି ପାଣି କହିବ । ହେଲେ ଆମ ଇଷ୍ଟ ଦେବତା ପାଣି ପାଣି କହୁଥିବେ । ଆଜି ତୁମେ ସନ୍ଧ୍ୟାବେଳେ ପୂଜା କଲ ନାହିଁ କି ପାଣିଦେଲ ନାହିଁ । ତେଣୁ ସେ ପାଣି ମାଗୁଛନ୍ତି ।"

"ଭୁଲ ପ୍ରକୃତରେ ହୋଇଗଲା । ମୁଁ ତ ଖୁବ୍ ଡେରିରେ ଫେରିଲି । ଭାବିଲି—ତୁମେ ପୂଜାକରି ପାଣି ଦେଇ ଦେଇଥିବ । ଯାହା ତ ହେବାର ହେଲାଣି । ଯାଅ ନଡ଼ିଆଟିଏ ଉପରେ ଦେଇଆସ । ନଡ଼ିଆପାଣି ଇଷ୍ଟଦେବତା ପିଅନ୍ତୁ ।" ଧର୍ମଲୋକଟି କହିଲା ।

ସ୍ତ୍ରୀଲୋକଟି ନଡ଼ିଆଟିଏ ନେଇଗଲା । ମୁଖିଆ ଯେଉଁ-ପଟରେ ବସିଥିଲା ସେଇ ପଟେ ନେଇ ତାକୁ ଥୋଇଦେଲା ।

ମୁଖିଆଟି ନଡ଼ିଆକୁ ନେଲା । ତାକୁ ଭାଙ୍ଗିବାକୁ ଗୋଟିଏ କଠିଣ ଜିନଷ ଦରକାର । ସେ ଅନ୍ଧାରରେ ଛାତ ଉପରଯାକ ଅଣ୍ଡାଳିଲା । ଶେଷକୁ ଆରବ ବ୍ୟବସାୟୀ ମୁଣ୍ଡ ତା' ହାତରେ ବାଜିଲା ।

ଆଉ ଜଣେ ମଣିଷ ଯେ ସେଇ ଜାଗାରେ ଅଛି, ଆରବ ବ୍ୟବସାୟୀ ସେ କଥା କାହିଁକି ବା ଜାଣିବ ? ସେ ସେଇଠି ବସି ବସି ଶୋଇଯାଇଥିଲା । ହଠାତ୍ ଆଉଜଣଙ୍କ ହାତ ତା'

ମୁଣ୍ଡରେ ବାଜିବାରୁ ତାର ନିଦ ଭାଙ୍ଗିଗଲା । ସେ ଆଶ୍ଚର୍ଯ୍ୟ ଓ ହତବାକ୍ୟ ।

ନଡ଼ିଆପାଣି ଯଥେଷ୍ଟ ହେବ ନାହିଁ ବୋଲି ଧମାଲୋକଟି ଭାବିଲା । ସେ ଲୋଟାଏ ପାଣିଧରି ଉପରକୁ ଆସିଲା । ଜହ୍ନ ଆଲୁଅରେ ମୁଖିଆ ତାକୁ ଦେଖିପାରି ଗୁନିଆ ହୋଇଗଲା । କଣ କରିବ ଜାଣି ପାରିଲା ନାହିଁ । ଭୟରେ ସେ ନଡ଼ିଆଟିକୁ ଆରବ ବ୍ୟବସାୟୀ ମୁଣ୍ଡରେ ପିଟିଦେଲା । ଫଳରେ ଆରବ ବ୍ୟବସାୟୀ ମୁଣ୍ଡ ଫାଟିଗଲା । ସେ ପ୍ରାଣବିକଳରେ ସିଡ଼ିଦେଇ ତଳକୁ ଧାଇଁଆସି କବାଟ ଖୋଲି ପଳାଇଲା ।

ତାର ପଳାଇବା ଦେଖି ଧମାଲୋକଟି ଗୁନିଆ । ସେ ଭାବିଲା ତାର ହେଲା ଯୋଗୁଁ ଇଷ୍ଟଦେବତା ପଳାଇଗଲେ । ତେଣୁ ସେ ଚିତ୍କାର କଲା—“ପାଣି ଦେଉଛି । ଯିବା ବନ୍ଦ କରନ୍ତୁ ।”

ସ୍ତ୍ରୀ ତା’ର ସ୍ୱାଭାବିକ କଣ୍ଠରେ ଥିଲା—“କ’ଣ ହେଲା ?”

ଇଷ୍ଟଦେବତା ଆମକୁ ଛାଡ଼ି ଚାଲିଗଲେ । ଭୟାର୍ତ୍ତ ଧମା ଲୋକଟି କହିଲା ।

ମୁଖିଆଟି ଏଥର ଅସମ୍ଭାଳ । ସେ ଭାବିଲା ଏ ମୁହୂର୍ତ୍ତ ଛାଡ଼ିଲେ, ସୁବିଧା ହୁଏ ତ ଆସି ନ ପାରେ । ସକାଳ ହେଲେ ଧରାପଡ଼ିବ । ଇଜ୍ଜତ ମହତ ଯିବ । ସେ ଆଉ ହେଳା କଲା ନାହିଁ । ସେ ସିଡ଼ିବାଟେ ତଳକୁ ଓହ୍ଲାଇ ମେଲା ଦୁଆର ବାଟେ ବାହାରକୁ ପଳାଇଲା ।

“ଏ କିଏ ?” ଧମାଲୋକଟି ତାର ସ୍ତ୍ରୀକୁ ପଚାରିଲା ।

ଏ ଆମ ଗୃହର ଠାକୁରାଣୀ । ଇଷ୍ଟଦେବତାଙ୍କ ପଛରେ ଯାଉଛନ୍ତି । ସାମାନ୍ୟ ହସି ସ୍ତ୍ରୀଲୋକଟି ଉତ୍ତର ଦେଲା ।

●

# କଳାନଦୀ

କେତେ କାଳର କଥା କହିହେବ ନାହିଁ । ସେତେବେଳେ ମେମାକା ନାଁ'ରେ ଝିଅଟିଏ ଥିଲା । ସେ ଖୁବ୍ ସୁନ୍ଦରୀ । ଓଠ ତାର ନାଲି । ସତେ ଯେମିତି ନୂଆ ପତ୍ର ଗଛରେ କଅଁଳୁଛି । ଅର୍ଦ୍ଧଚନ୍ଦ୍ର ପରି ତାର କପାଳ । ଆଖି ଦୁଇଟା ତାର ବେଶ୍ ଉଜ୍ଜ୍ୱଳ । ସତେକି ଅନ୍ଧାର ରାତିର ନକ୍ଷତ୍ର ।

କଳାନଦୀ ଖୁବ୍ ଭୟଙ୍କର । ପାହାଡ଼ ଫଟାଇ ଏହା ବୋହି ଯାଇଛି । ସୁଅ ତାର ଖୁବ୍ ଟାଣ । ସାପମୁଣ୍ଡ ଦି'ଖଣ୍ଡ ହୋଇଯିବ । ଠା'କୁ ଠା' ଏଠି ଭଉଁରି ହୁଏ । ବେଶ୍ ବଡ଼ ବଡ଼ ସେ ଗୁଡ଼ାକ । ଏମିତିକି ନାଉରିମାନେ ଏହାକୁ ଦେଖି ଡରିଯା'ନ୍ତି । ଡଙ୍ଗା ପ୍ରତି ଏସବୁ ବିପଦ । ସେଥିପାଇଁ ସେମାନେ ଖୁବ୍ ହୁସିଆର । ଜାଗରତିଆର ହୋଇ ଡଙ୍ଗା ବାହାନ୍ତି ।

ତା'ର କୂଳରେ ମେମାକାର ଘର । ବାପା ମା ସହିତ ସେ ରହେ । ପିଲାଟି ଦିନରୁ ଏଇ ନଈ ସାଙ୍ଗରେ ତାର ପରିଚୟ । ସେ ନଈକୁ ଅନାଇ ଆନନ୍ଦ ପାଏ । ନଈରେ ପହଁରିଲେ, ପ୍ରାଣ ତାର ଉତ୍ଫୁଲ୍ଲ ହୁଏ । ଯେଉଁ ନଈକୁ ସମସ୍ତଙ୍କର ଡର, ଏଠି ସେ ନିର୍ଭୟ । ନଈଟା ଯେମିତି ତା'ର ଅତି ଆପଣାର । ଏଠାରେ ପହଁରୁଥିବା କୁମ୍ଭୀର ଖୁବ୍ ଭୟଙ୍କର । ଲୋକେ ସେମାନଙ୍କୁ ଦେଖି ଛାନିଆ । ଭୟରେ କେହି ନଈକୁ ଗାଧୋଇବାକୁ ଆସନ୍ତି ନାହିଁ । କିନ୍ତୁ ମେମାକାର ତାଙ୍କୁ ଖାତିର ନ ଥାଏ । ସେ ବେପରୁଆ ହୋଇ ପହଁରେ । ସେମାନେ ମେମାକାର କିଛି କ୍ଷତି କରନ୍ତି ନାହିଁ ।

ଗୋଟିଏ ସହର ପାଖରେ କଲାନଘା ସମୁଦ୍ରରେ ପଡ଼ୁଛି । ସେଇ ସହରକୁ ଏଇ ନଈ ହେଉଛି ଏକମାତ୍ର ବାଟ । ତେଣୁ ସହରର ସମସ୍ତ କାରବାର ଏଇ ନଈ ବାଟେ ହିଁ କେବଳ ହୁଏ । ତେଣୁ ମାଲ ମାଲ ଡଙ୍ଗା ଦିନ ରାତି ଏଇ ନଈ ବାଟେ ଯାଏ । ସବୁ ନାଉରି ମେମାକାକୁ ଜାଣନ୍ତି । ସମସ୍ତଙ୍କ ତୁଣ୍ଡରେ ମେମାକାର ପ୍ରଶଂସା ।

ଯୁବକ ନାଉରିମାନେ ତାର ରୂପରେ ପାଗଳ । ତାର ହାତ ଧରିବାକୁ ସେମାନଙ୍କର ପ୍ରବଳ ଆଗ୍ରହ । ତାକୁ ପାଖରେ ପାଇଲେ ଡଙ୍ଗା ଅଟକାଇ ସେମାନେ ତା ସାଥୀରେ ଗପନ୍ତି । ମେମାକା ବି ତାଙ୍କ ସାଥୀରେ ଗପେ । ଖିଲଖିଲ ହୋଇ ହସେ । ସମସ୍ତେ ଭାବନ୍ତି, ମେମାକା ସେମାନଙ୍କୁ ଭଲପାଏ । କିନ୍ତୁ କେହି ତାର ପସନ୍ଦକୁ ଆସନ୍ତି ନାହିଁ । ତାଙ୍କୁ ବିଦାୟ ଦେଲାବେଳେ ତାର ହସ କେବଳ ସେମାନଙ୍କ ମନକୁ ମଉଳାଇ ଦିଏ ।

ମେମାକାର ତ ଅପରୂପ ରୂପ । ସେଥିପାଇଁ ତା' ପାଇଁ ସୁଯୋଗ୍ୟ ପାତ୍ରଟିଏ ପାଇବାକୁ କଷ୍ଟ ହେବ ନାହିଁ । ଏକଥା ତାର ବାପାମା ଜାଣିଥିଲେ । ସେମାନେ ମେମାକାକୁ ବାରମ୍ବାର ବୁଝାଉଥିଲେ—ନାଉରି ଜୀବନ ଦୁଃଖମୟ । ସେମାନେ ଭଲଘର ଭଲବର ବୁଝି ଦେବେ । ସେ ବାପ୍ଛିଲା ତା ନିଜ ମୁଣ୍ଡକୁ ନ ନେବାପାଇଁ ତାକୁ ପ୍ରବର୍ତ୍ତାଉଥିଲେ ।

କଲାନଘାରେ ଡଙ୍ଗା ବାହୁଥିବା ଅଗଣିତ ନାବିକ ମଧ୍ୟରୁ ବାନ୍ଦା ଅନ୍ୟତମ । ସେ ଦେଖିବାକୁ ବେଶ୍ ସୁନ୍ଦର । ସ୍ୱାସ୍ଥ୍ୟବାନ । ଦେହରେ ତାର ହାତୀର ବଳ । ଡଙ୍ଗା ବୋହିବାରେ ବେଶ୍ ଧୁରନ୍ଧର । ମାଲ ବୋଝେଇ କରି ସେ ଡଙ୍ଗାରେ ତାର ଆଣେ । ସହରରେ ଖଲାସ କରେ । ପୁଣି ଖାଲି

ଡଙ୍ଗା ଧରି ଉପର ମୁଣ୍ଡକୁ ଯାଏ । ସେ ଭାରି ବେପରୁଆ । ଡରଭୟ କଣ ସେ ଜାଣେ ନାହିଁ । ତା କାମରେ ସେ ଏପରି ବ୍ୟସ୍ତ ଯେ ଅନ୍ୟ କାହାକୁ ଅନାଇବାକୁ ତାର ବେଳ ନ ଥାଏ । ମେମିକା ବାନ୍ଦାକୁ ଦେଖେ । ବାନ୍ଦା ବି ମେମିକାକୁ ଦେଖେ । କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ସେମାନଙ୍କର ସମ୍ପର୍କ ନ ଥିଲା । କେହି କାହା ସାଥିରେ କଥା ବି ହୋଇ ନ ଥିଲେ । କିନ୍ତୁ ପରସ୍ପର ପରସ୍ପରକୁ ମନେ ମନେ ପ୍ରଶଂସା କରୁଥିଲେ ।

ହଠାତ୍ ଥରେ ମେମିକା ସହ ବାନ୍ଦାର ପରିଚୟ ହେଲା । ସେଇଦିନୁ ସେଇ ମୁହୂର୍ତ୍ତରୁ ସେମାନେ ନିବିଡ଼ ହୋଇଗଲେ ।

କୌଣସି କଥା ଲୁଚେ ନାହିଁ । ଏକଥା ମେମିକାର ବାପା ମା କାନକୁ ଗଲା । ସେମାନେ ଝିଅକୁ ସାବଧାନ କରାଇ କହିଲେ— "ଆମେ ଆମର ମନ ଲାଖି ପାତ୍ରଟିଏ ଖୋଜୁଛୁ । ବାନ୍ଦାକୁ ତୁ ବାହାହେଲେ, ଆମର ସବୁ ଆଶା ଧୂଳିସାତ୍ ହୋଇଯିବ । ତୁ କଣ ଆମକୁ ଅପଦସ୍ତ କରିବାକୁ ଚାହୁଁଛୁ ?"

ମେମିକା ଭଲ ପିଲା । ଭାରି ବାଧ୍ୟ । ବାପ ମା'ଙ୍କ କଥା ମାନି ସେ ବାନ୍ଦା ସାଥିରେ ଆଉ ମିଶିଲା ନାହିଁ ।

ବାନ୍ଦା ଡଙ୍ଗାରେ ଗଲା ଓ ଆଇଲା ବେଳେ ମେମିକାକୁ ଦେଖେ । ମେମିକା ତାକୁ ବି ଦେଖେ । ସେ ତାର ଡଙ୍ଗାକୁ ଅଟକାଏ ନାହିଁ । ମେମିକା ତାକୁ ପଦେ ବି କିଛି କହେ ନାହିଁ । ବାନ୍ଦା ସାଥିରେ ଯେ ତାର ସମ୍ପର୍କ ନାହିଁ, ଏକଥା ସମସ୍ତେ ଜାଣିଲେଣି ।

ସେଦିନ କାମଦାମ ସାରି ମେମିକା ନଈକୁ ଗାଧୋଇବାକୁ ଗଲା । ସାଥିରେ ତାର ବୁଢ଼ୀ ଖୁଡ଼ୀ ।

ତାହା ଏକ ଅଭିନବ ଗଛ । ଜହ୍ନ ଫୁଲ ପରି ଜହ୍ନ ଆଲୁଅ ଗଛରିଆଡ଼େ ବିଛୁଡ଼ି ହୋଇ ପଡ଼ୁଥିଲା । ଆନନ୍ଦରେ ମେମାକା ନଈରେ ପହଁରିଲା । ଠିକ୍ ଗୋଟିଏ ସୁଖି ଥୋଡ଼ମାଛ ପରି । ପଛେ ପଛେ ତାର ଲମ୍ବା କଳା କଳା ବାଳ ଭାସୁଥିଲା । ସତେକି ମେଞ୍ଚାଏ ଦଳ । ମେମାକା ଆଗକୁ ଆଗକୁ ପହଁରି ଗ୍ଲଲା । ବୁଢ଼ୀ ତାର ଏ ଢଙ୍ଗ ଦେଖି ଡରିଗଲା । ସେ କୂଳରେ ଥାଇ ଅନୁଭବ କଲା—ନଈ ମଝିର ଭୟଙ୍କର ସୁଅରେ ମେମାକା ପଶି ଯାଉଛି । ସେଠିତ ସାପ ମୁଣ୍ଡ ବିଖଣ୍ଡ ହୋଇଯାଏ । ମେମାକା ସେଠୁ କିପରି ବାହାରିବ, ବୁଢ଼ୀର ସେଇ ଚିନ୍ତା । ବୁଢ଼ୀକୁ ଡର ମାଡ଼ିଲା । ସେ ଡାକ ପକାଇଲା ମେମାକା··· ମେମାକା··· । ମେମାକା ତା ଡାକ ଶୁଣିଲା କି ନାହିଁ ତାକୁ ଜଣା । କିନ୍ତୁ ବୁଢ଼ୀ ଦେଖିଲା—ମେମାକା କିଛି ଉତ୍ତର ଦେଲା ନାହିଁ । ସେ ସୁଅଭିତରେ ଆଗକୁ ଗ୍ଲଲି ଯାଉଥିଲା । ଏଇ ସମୟରେ ଉପର ମୁଣ୍ଡରୁ ଡଙ୍ଗାଟିଏ ଭସି ଆସିଲା । ଖୁବ୍ ଜୋରରେ । ସୁଅଠାରୁ ତାର ଗତି ଅତି ପ୍ରଖର । ଖିପ୍ର । କ୍ରମେ କ୍ରମେ ମେମାକା ପାଖକୁ ଲାଗିଆସିଲା । ବାହା ସେ ଡଙ୍ଗା ବାହୁଥିଲା ।

ବାହା ତାର ହାତ ବଢ଼ାଇଲା । ମେମାକା ମୁହଁ ଟେକି ଗ୍ଲହିଁଲା । ଗ୍ଲରି ଚକ୍ଷୁର ମିଳନ ହେଲା । ବାହାର ଆହ୍ୱାନ ଏଡ଼ାଇବା ମେମାକା ପକ୍ଷେ ଅସମ୍ଭବ ହୋଇ ଉଠିଲା । ଆସ୍ତେ ଆସ୍ତେ ତାର ମନର ବଳ ଭାଙ୍ଗିଗଲା । ମନ ତାର ଦୁର୍ବଳ ହୋଇ ପଡ଼ିଲା । ସେ ସ୍ଥିରହୋଇ ରହି ପାରିଲା ନାହିଁ । ସେ ବାହାର ବଢ଼ାଇଥିବା ହାତକୁ ଧରିଲା । ଡଙ୍ଗା ଉପରକୁ ଉଠିଗଲା । ବାହା ଆଉ କାଳବିଳମ୍ବ କଲା ନାହିଁ । ଖୁବ୍

ଜୋରରେ ସ୍ରୋତର ଅନୁକୂଳରେ ଡଙ୍ଗା ଛୁଟାଇ ଦେଲ । ଅଳ୍ପ ସମୟରେ ଡଙ୍ଗାଟି ଅଦୃଶ୍ୟ ହୋଇଗଲା ।

ସେ ରାତିର ଜହ୍ନ ଆଲୁଅ ହବାଲୋକ ପରି ସ୍ପଷ୍ଟ । ପରିଷ୍କାର । ବୁଢ଼ୀ ଅନାଇଛି । ଚଳଚିତ୍ର ପରି ଏସବୁ ଦୃଶ୍ୟ ତା' ଆଖି ଆଗରେ ଦେଖା ଦେଇ ଚାଲିଗଲା । ବାନ୍ଧା ସାଥୀରେ ମେନକା ପଳାଇଲା । ସେଥିରେ ହସ୍ତକ୍ଷେପ କରିବା ବୁଢ଼ୀ ଖୁଡ଼ୀ ପକ୍ଷେ ଅସମ୍ଭବ । ଏହା ତାର ଶକ୍ତିର ବାହାରେ ।

ବୁଢ଼ୀ ଭାବିଲା—ମେନକା ତା ଦାୟିତ୍ୱରେ ଥିଲା । ସେ ବାନ୍ଧା ସାଥୀରେ ପଳାଇବା କଥା ଘରେ ଜାଣିଲେ କନ୍ଦଳ ଆଉ ବିଭ୍ରାଟ ହେବ । ସମସ୍ତେ ତାକୁ ଦୋଷ ଦେବେ । ତିରସ୍କାର କରିବେ । ତାକୁ ନିର୍ଯ୍ୟାତନା ଦେବା ବି ଅସମ୍ଭବ ନୁହଁ । ଏଥିରୁ ବାହ୍ୱ ତାର ଦରକାର । ସେଥିପାଇଁ ସେ ଭାବିଲା ସେ ମିଥ୍ୟାର ଆଶ୍ରୟ ନେବ । ଫିକର କରିବ ।

ସେ ସେଇଠୁ କାନ୍ଦିବାକୁ ଆରମ୍ଭ କଲା । ଖୁବ୍ ଜୋରରେ ଛାତିକୁ ବାଡ଼େଇ କାନ୍ଦିଲା । କି ବୁକୁ ଫଟା କାନ୍ଦ ତାର । ପଥର ହୋଇଥିଲେ ବି ତରଳି ଯିବ । ତାର କାନ୍ଦ ଶୁଣି ଲୋକେ ଧାଇଁ ଆସିଲେ । ସମସ୍ତଙ୍କୁ କାନ୍ଦି କାନ୍ଦି ସେ କହିଲା—"ମେନକା ନଈ ମଝିରେ ପହଁରୁଥିଲା । କୁମ୍ଭୀରଟିଏ ତାକୁ ଟାଣି ନେଲା ।" ଥୋକେ ତାକୁ ବିଶ୍ୱାସ କଲେ । ଅନେକ ତାକୁ ଅବିଶ୍ୱାସ କଲେ । ସେମାନଙ୍କ ମତରେ ମେନକା ର କୁମ୍ଭୀର ସାଥୀ, ବନ୍ଧୁ ଓ ସହଚର । ସେମାନେ ତାକୁ ନେବାଟା ଅସମ୍ଭବ କଥା । ସେମାନଙ୍କ ମତରେ ସେ ତାର ପ୍ରେମିକ ସାଥୀରେ ପଳାଇ ଯାଇଛି ।

କଳାନନ୍ଦି ବାସ୍ତବିକ ମାଇଲ ଲମ୍ବା । ଏବେ ବି ନାଉରି-ମାନେ ଏଥିରେ ଡଙ୍ଗା ବାହାନ୍ତି । ସେମାନେ ବାନ୍ଧା,ମେନକା

ପ୍ରେମ କଥା ମନେ ରଖିଛନ୍ତି । ଉଙ୍ଗା ବାହିବା ବେଳେ ସେମାନଙ୍କର ମନ ଛନଛନ ହୁଏ । ସେଥିପାଇଁ ସେମାନେ ଗାଆନ୍ତି—

କଲାନଗାରେ ଅନ୍ଧାର ସ୍ରୋତରେ
ମୋର ଗାଧୋଇବା ବେଳେ
ଉଭା ହେଲ ଆସି ସୁନ୍ଦରୀ ଉର୍ବଶୀ
ମୋତି ହାର ତାର ଗଳେ
ସେଇ ମୋତି ହାର ଅତି ମନୋହର
ଭୁଲିଗଲି ମୁହିଁ ସାରା ସଂସାର ।
କୂଳକୁ କପଟ ନେଇ ତାହାକୁ
ମନ ପ୍ରାଣ ମୋର ହୁଏ ଅସ୍ଥିର ।

ଅପର ପକ୍ଷରେ ମେଣାକାକୁ କୁମ୍ଭୀର ନେବା କଥା କେତେ ଲୋକେ ଏବେ ବି ବିଶ୍ୱାସ କରନ୍ତି । ପ୍ରତି ବର୍ଷ କଲା ନଈରେ ଏଇ ସମୟରେ ମଣିଷଟିଏ ବୁଡ଼ି ଯାଏ । ଲୋକଙ୍କର ବିଶ୍ୱାସ— ଏ ଦେଶକୁ ଇଂରେଜମାନେ ଆସିଲା ବେଳେ ଇଏ ଥିଲା ପୋଲୋ କୁମାରୀ ବାମଙ୍କ ବଂଶୀୟ ଲୋକଙ୍କ ରତ୍ନଭଣ୍ଡାର । ତାକୁ ଇଂରେଜମାନେ ନେଇଯିବା ଭୟରେ ସେମାନେ ଏଇ ଧନରତ୍ନକୁ ପାହାଡ଼ରେ ପୋତି ଦେଇଥିଲେ । କାଳେ ଲୋକେ ବାଟ ଭୁଲିଯିବେ । ସେଥିପାଇଁ ସେମାନେ ଗୋଟିଏ ପଥରରେ ଏଇ ବାଟ କଥା ଖୋଦେଇ କରି ପୋତି ଥିଲେ । ସେ ପଥର ଆଜି ଏଠି ବି ଅଛି । ଲେଖା ସବୁ ଅସ୍ପଷ୍ଟ । ଏଇ ରତ୍ନ ଭଣ୍ଡାରକୁ ଗୋଟିଏ କୁମ୍ଭୀର ଜଗେ ।

ତା ବେକରେ ଗୋଟିଏ ସୁନାର ହାର । ସେ ଅନ୍ୟ କୁମ୍ଭୀରଙ୍କ ଠାରୁ ଅଲଗା । ପ୍ରତି ବର୍ଷ ଏଇ ସମୟରେ ସେ

ଗୋଟିଏ ମଣିଷ ଖାଏ । ସେଥିପାଇଁ ମଣିଷଟିଏ ହଜି ଯାଏ । ମେମ୍ପାକା ହେଲା ପ୍ରଥମ ମଣିଷ ଯାହାକୁ କୁମ୍ଭୀର ଖାଇଥିଲା ।

କଳାନଘା କାଳୁଗଙ୍ଗା । ଏବେ ଏହାକୁ ପାର ହେବା ପାଇଁ ପୋଲଟିଏ ଅଛି । ତଥାପି ଏ ନଈର ଭୟ ଲୋକଙ୍କ ମନରୁ ଯାଇନାହିଁ । ଏଇ ପୋଲ ପାର ହେଲା ବେଳେ ମଟର ଚାଳକମାନେ ପୋଲ ପାଖରେ ଗାଡ଼ିର ଗତି ଧିମେଇ ଦଅନ୍ତି । ନଗପଦ ପାଇଁ ପାଖରେ ଥିବା "ବୋ" ଗଛକୁ ନମସ୍କାର କରନ୍ତି । ତାପରେ ଜୋରରେ ଗାଡ଼ି ଛୁଟାଇ ଦଅନ୍ତି ।

---

# ଉମା ଦାସୀଙ୍କ

କାହିଁ ଅଢ଼େଇ ହଜାର ବର୍ଷ ତଳର କଥା । ସେତେବେଳେ ଶ୍ରୀଲଙ୍କା ଗୋଟିଏ ଦେଶ ହୋଇ ନ ଥିଲା । ତାହା ଖଣ୍ଡ ବିଖଣ୍ଡ ହୋଇ ବହୁ ରାଜ୍ୟରେ ବିଭକ୍ତ ହୋଇଥିଲା । ସେଥିରେ ଜଣେ ଜଣେ ରାଜା ଥିଲେ । ସେଇ ଭିତରୁ ଗୋଟିଏ ରାଜ୍ୟର ରାଜାଙ୍କ ନାଁ ପାଣ୍ଡୁ ବାସୁଦେବ ।

ସେହି ରାଜାଙ୍କର ସାତ ପୁଅ । ଝିଅଟିଏ ନ ଥିଲା । ସେଥିପାଇଁ ରାଜାଙ୍କ ମନ ଭାରି କଷ୍ଟ । ବହୁ ପୂଜା ହୋମ ଯଜ୍ଞ କଲେ । ଭଗବାନଙ୍କ ଦୟା ହେଲା । ଶେଷକୁ ତାଙ୍କର କନ୍ୟା ରତ୍ନଟିଏ ହେଲା । ଶ୍ରଦ୍ଧାରେ ରାଜା ତାର ନାମ ଉମା ଦାସିଙ୍କା ରଖିଲେ ।

ପୁଅଟିଏ ହେବାରୁ ରାଜାଙ୍କର ଆନନ୍ଦ କହିଲେ ନ ସରେ । ତା'ର ପ୍ରତିଫଳରେ ସାରା ରାଜ୍ୟରେ ସବୁଠି ମହୋତ୍ସବ । ସବୁଠି ଆନନ୍ଦର ଲହରୀ ।

ରାଜା ତ ଉମା ପାଇଁ ଭାରି ବ୍ୟସ୍ତ । ତେଣୁ ତାର ଭବିଷ୍ୟତ ଜାଣିବା ପାଇଁ ଉଦ୍‌ବିଗ୍ନ । ସେଥିପାଇଁ ତାଙ୍କ ରାଜ୍ୟର ଆଉ ଆଖପାଖ ରାଜ୍ୟର ଜ୍ୟୋତିଷମାନଙ୍କୁ ଡକାଇଲେ । ଜାତକ ତିଆରି ହେଲା । ଭବିଷ୍ୟତ ଗଣନା ଚାଲିଲା ।

ଜ୍ୟୋତିଷମାନେ ପାଣ୍ଡୁ ବାସୁଦେବ ଓ ତାଙ୍କର ପୁଅମାନଙ୍କୁ କହିଲେ—"ଉମାର ଜାତକ ଭାରି ବଳୀୟାନ । ଏଇ ଜାତକର ସନ୍ତାନ ବଡ଼ ବିଜୟୀ ହେବ । ସମଗ୍ର ଲଙ୍କାକୁ ଜୟ କରି ସେ ସମଗ୍ର ଦେଶର ସମ୍ରାଟ ହେବ ।" ଏ କଥା ଶୁଣି ରାଜା ଓ ତାଙ୍କର ସାତ ପୁଅମାନେ ଭାରି ଖୁସି ହୋଇଗଲେ ।

ଏତିକିବେଳେ ଗଣାକାରମାନେ କହିଲେ—"କିନ୍ତୁ ଏ ଜାତକରେ ଗୋଟିଏ ଅଶୁଭ ଲକ୍ଷଣ ଅଛି ।"

"ତାହା କ'ଣ ?" ପାଣ୍ଡୁ ବାସୁଦେବଙ୍କର ପ୍ରଶ୍ନ ଥିଲା ।

ସେମାନେ ସମସ୍ୱରରେ କହିଲେ—"ଏ ଜାତକର ସନ୍ତାନ ମହାପ୍ରତାପଶାଳୀ ହେବ । ଯେ ତା ବିରୁଦ୍ଧରେ ଯିବ, ତାକୁ ସେ ହତ୍ୟା କରିବାକୁ ଟିକିଏ ହେଲେ ଦ୍ୱିଧା କରିବ ନାହିଁ ।"

ରାଜା କହିଲେ—"ଏହା ତ ସବୁ ପ୍ରତାପଶାଳୀ ରାଜାମାନେ କରିଥାନ୍ତି । ଏ ଜାତକର ସନ୍ତାନ ପକ୍ଷେ ଏହା କିପରି ଅଶୁଭ ।"

ସେମାନେ କହିଲେ—"ମହାରାଜ, ଜାତକରୁ ଯାହା ଜଣାପଡ଼େ, ଏ ଜାତକର ସନ୍ତାନ ବଡ଼ ବିଜୟୀ ହେଲେ, ତାର

ମାମୁଁମାନେ ତାଙ୍କୁ ବିରୋଧ କରିବେ । ତେଣୁ ଏ ସେମାନଙ୍କୁ ହତ୍ୟା କରିବ ।"

ଏ ଗଣନା ଶୁଣି ପାଣ୍ଡୁ ବାସୁଦେବଙ୍କର ମୁହଁ କଳା ପଡ଼ିଗଲା । ସେଠାରେ ଉପସ୍ଥିତ ପୁଅମାନେ ଏ ଗଣନା ଶୁଣି ସ୍ତବ୍ଧ । ଏହାର ପ୍ରତିକାର ପାଇଁ ସେମାନେ ମସୁଧା କଲେ । ଉମାକୁ ହତ୍ୟା କରିବା ପାଇଁ ବଡ଼ ଛ ଭାଇମାନେ ସ୍ଥିର କଲେ । ସାନ ଭାଇ ଅଭୟ । ଏ ନିଷ୍ପତ୍ତିର ପ୍ରତିବାଦ କଲା । ସେ ବଡ଼ ଛ ଭାଇଙ୍କୁ ବୁଝାଇଲା—"ଉମା ଆମର ଭଉଣୀ । ସେ ଆମର ଶତ୍ରୁ ନୁହଁ । ତା ପେଟରୁ ଜନ୍ମ ହେବା ପୁଅ ଆମର ଶତ୍ରୁ । ସେ ଆମକୁ ହତ୍ୟା କରିବ । ତେଣୁ ଉମାକୁ ହତ୍ୟା ନ କରି ଆମେ ଏପରି ବ୍ୟବସ୍ଥା କରିବା ଯେ ଯାହା ଫଳରେ ଉମାର ପୁଅ ଜନ୍ମା ହେବ ନାହିଁ । ତାହା ହେଲେ ଆମକୁ ହତ୍ୟା କରିବାର ପ୍ରଶ୍ନ ଉଠିବ କେଉଁଠୁ ?"

କଥାଟା ଭାଇମାନଙ୍କ ମନକୁ ପାଇଲା । ସେମାନେ ଅଭୟକୁ ପଚାରିଲେ—"ଏ ବିଗରେ ତୋର ଯୋଜନା ତୁ ଆମକୁ ପରିଷ୍କାର କରି କହ ।"

ଅଭୟ ଯାହା କହିଲା ଭାଇମାନେ ତାକୁ ପସନ୍ଦ କଲେ । ଅଭୟର ଯୋଜନା ଅନୁସାରେ ଅଟ୍ଟୁଚ ଗମ୍ବୁଜଟିଏ ତିଆର ହେଲା । ତାର ଶୀର୍ଷରେ ଉଆସଟିଏ ହେଲା । ସେଠାରେ ଉମାକୁ ରଖାଗଲା । ତାର ତତ୍ତ୍ୱ ନେବାକୁ ରାଜବଂଶର ସବୁଠାରୁ ବିଶ୍ୱସ୍ତ ଧାଈକୁ ନିଯୁକ୍ତ ମିଳିଲା । ଦିନ ରାତି ଗମ୍ବୁଜ ଜଗିବାକୁ ଗୋଟିଏ ସୈନ୍ୟ ବାହିନୀ ରହିଲେ । କାଳେ ସେମାନଙ୍କର ପହରାରେ ତ୍ରୁଟି ହେବ, ତାହା ତଦାରଖ କରିବାକୁ ଆଉ ଗୋଟିଏ ସୈନ୍ୟବାହିନୀ

ରହିଲେ । ଭାଇମାନେ ଏଥିରେ ବି ସନ୍ତୁଷ୍ଟ ନ ଥିଲେ । ପ୍ରହରୀ-ମାନଙ୍କ କାର୍ଯ୍ୟ ନିଜେ ମଝିରେ ମଝିରେ ତଦାରଖ କରୁଥିଲେ ।

ଗମ୍ବୁଜ ଉପର ଉଆସରେ ଦୁଇଜଣ ମଣିଷ । ଉମା ଓ ତାର ଦାସୀ । ସେମାନଙ୍କର କାମ କିଛି କରିବାକୁ ନଥିଲା । ସେମାନେ କଥାବାର୍ତ୍ତା କରି କେତେ ସମୟ ବା କଟାଇବେ ? ସମୟ ମାଡ଼ି ପଡ଼େ । ଜୀବନ ଦୁର୍ବିସହ ଲାଗେ ।

ଧାଈଟି ଭାରି ହସିଆର । ବୁଦ୍ଧିମତୀ । ଉମାକୁ କାର୍ଯ୍ୟରତ କରି ରଖିବାକୁ ତାର ଭାରି ଇଚ୍ଛା । ସେଥିପାଇଁ କନାରେ ଫୁଲ ପକାଇବାଟା ସେ ଉମାକୁ ଶିଖାଇ ଦେଇଥିଲା । ଉମା ବେଳେ ବେଳେ କନାରେ ଫୁଲ ପକାଏ । ସେଇ କାମ କରି କରି ସେ ବିରକ୍ତ ବି ହୁଏ । ତାକୁ ମୁକ୍ତ ଆକାଶକୁ ଚାହିଁବାକୁ ଭାରି ଭଲ ଲାଗେ । ସେ ଆକାଶକୁ ଚାହିଁ ରହେ । ମନ ତାର ଉଡ଼ି ବୁଲେ । ସାଥୀ ଖୋଜେ ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ବିନା ଚେଷ୍ଟାରେ କାଳକ୍ରମେ ଦେହର ଅବୟବ ବଦଳି ଯାଏ । ପିଲା ବଡ଼ ହୁଏ । ଉମା ଆଉ ପିଲା ହୋଇ ନାହିଁ । ସେ ଏବେ ଯୁବତୀ । ଧାଈଟି ତାକୁ ସୁବାସିତ କରିବାକୁ ମୁଣ୍ଡରେ ଚନ୍ଦନ ତେଲ ଲଗାଇ ଦିଏ । ତାର ଲାବଣ୍ୟମୟ ରୂପକୁ କମନୀୟ କରିବା ପାଇଁ ମାଠିଆ ମାଠିଆ ଦୁଧ ତା ଉପରେ ଢାଳେ । ଉମା ଅତି ସୁନ୍ଦରୀ । ଦୁଧରେ ଗାଧୋଇବା ଫଳରେ ସେ ଅଧିକ ଲାବଣ୍ୟମୟୀ ହୋଇ ଉଠିଲା । ନିଜ ଦେହର ସୌନ୍ଦର୍ଯ୍ୟକୁ ଉମା ଦେଖି ମୁଗ୍ଧ ହୁଏ । ମନରେ ତାର କ୍ଷୋଭ । ବିରକ୍ତି ଭାବ । ଏ ରୂପ ଯୌବନ ନିରର୍ଥକ । ଆକାଶକୁ ଚାହିଁ ଚାହିଁ ସେ ଭାବେ—ସ୍ୱାର୍ଥର ଏ

ସଂସାର । ରାଜାର ମର୍ଜି ଉପରେ ନାଗରିକରେ ଜୀବନ ନିର୍ଭର-ଶୀଳ । ତାର ନଗରର ମଙ୍ଗଳ ପାଇଁ ସେ ସମସ୍ତ ନାଗରିକଙ୍କର ଜୀବନକୁ ନିୟନ୍ତ୍ରିତ କରେ । ଯୁକ୍ତିଯୁକ୍ତ ବିଚାରର ଅବକାଶ ନ ଥାଏ । ଏଥିରୁ ରାଜ୍ୟର ନିୟମ ବ୍ୟତିକ୍ରମ ହୁଏ ନାହିଁ । ପ୍ରତିବାଦ କରିବାକୁ କାହାର ଜୁ ନ ଥାଏ । କାରଣ ପ୍ରତିବାଦ ଦଣ୍ଡନୀୟ । ବିଚାରର ସ୍ଥାନ ସେଠି ନାହିଁ ।

କେହି ଉମାକୁ ଦେଖି ନାହାନ୍ତି ସତ୍ୟ, କିନ୍ତୁ ଉମାର ସୌନ୍ଦର୍ଯ୍ୟ ବହୁ ଗପର ଆଧାର । ତାର ସୌନ୍ଦର୍ଯ୍ୟର ପଟାନ୍ତର ନାହିଁ । ଘରିଆଡ଼େ ତାହା ଚର୍ଚ୍ଚାର ବିଷୟ । ବହୁ ଲୋକ ଉମାକୁ ଦେଖିବାକୁ ଲାଳାୟିତ । ଏକଥା ରାଜାଙ୍କୁ ଅଛପା ରହିଲା ନାହିଁ । ତେଣୁ ରାଜା ଘୋଷଣା ପ୍ରକାଶ ପାଇଲା--"ଯେ ଉମାକୁ ଦେଖିବାକୁ କୌଣସି ପ୍ରକାର ଚେଷ୍ଟା କରିବ, ତାର ମୃତ୍ୟୁ ଦଣ୍ଡ ସୁନିଶ୍ଚିତ ।"

ଏ ଘୋଷଣା ଢେଙ୍ଗୁରା ମାଧ୍ୟମରେ ପୁର ପଲ୍ଲୀରେ ପ୍ରଚାର କରାଗଲା । ଲୋକେ ଏ ଘୋଷଣା ଶୁଣି ସ୍ତମ୍ଭିଆ । କେହି ଗମ୍ଭୁଜ ବାଟେ ଗଲାବେଳେ ଗମ୍ଭୁଜକୁ ମୁଣ୍ଡ ଟେକି ଅନାଇବାକୁ ସାହାସ ବି କଲେ ନାହିଁ ।

ସବୁ କଥା ଦେଶର ସୀମା ଭିତରେ ଆବଦ୍ଧ ରହିଲା ନାହିଁ । ପଡ଼ଶା ରାଜ୍ୟକୁ ବ୍ୟାପିଗଲା । ଉମାର ସୌନ୍ଦର୍ଯ୍ୟ ଓ ଲାବଣ୍ୟମୟ ରୂପ ପଡ଼ଶା ରାଜ୍ୟର ଆଲୋଚନାର ବିଷୟବସ୍ତୁ ହୋଇଗଲା । ସେତେବେଳକୁ ଗୋଟିଏ ପଡ଼ୋଶୀ ରାଜ୍ୟରେ ରାଜା ଉଗ୍ରା ଗାମିନୀ ରାଜୁତି କରୁଥାନ୍ତି । ସେ ଅବିବାହିତ । ଅସମ୍ଭବ ତାଙ୍କର ସାହାସ । ଯୁଦ୍ଧବିଦ୍ୟାରେ ସେ ନିପୁଣ ।

ଉମାର ଅଲୌକିକ ସୌନ୍ଦର୍ଯ୍ୟ କଥା ଶୁଣି ସେ ମୁଗ୍ଧୀଭୂତ । ତା' ସହିତ ବିବାହ କରିବାକୁ ସେ ଚାହାଁଲେ । କିନ୍ତୁ ସେ ଯେ ବିଧବା ! ତା ଉପରେ ଆଖି ପକାଇଲେ ମୃତ୍ୟୁଦଣ୍ଡ ଅନିବାର୍ଯ୍ୟ । ସେକଥା ସେ ଦେଶର ରାଜ ଘୋଷଣା । ତେଣୁ କିପରି ତାକୁ ବିବାହ କରିବେ, ତାହା ତାଙ୍କର ଏକ ଚିନ୍ତାର ବିଷୟ ହୋଇଗଲା ।

ଡୀଗା ଗାମୀନୀ ଗଭୀର ଭାବରେ ଚିନ୍ତା କଲେ । ପାଖ ମନ୍ତ୍ରୀମାନଙ୍କର ପରାମର୍ଶ ଲୋଡ଼ିଲେ । ଉମାର ବାପା ଓ ସାତଭାଇଙ୍କୁ ଯୁଦ୍ଧରେ ପରାସ୍ତ କଲେ ଉମାକୁ ଉଦ୍ଧାର କରିହେବ। ଫଳରେ ବିବାହ ତା ସହିତ କରିବା ଅତି ସହଜ । ଯାହାର ଭାଇ ଓ ବାପାଙ୍କୁ ଯୁଦ୍ଧରେ ପରାସ୍ତ କରାଯିବ, ସେ କଣ ମନଖୁସିରେ ଯୁଦ୍ଧର ବିଜେତାକୁ ବିବାହ କରି ଶାନ୍ତିରେ ରହି ପାରିବ ? ତା'ଛଡ଼ା ଜଣେ ନାରୀ ପାଇଁ ଯେଉଁ ଯୁଦ୍ଧ ହେବ, ସେଥିରେ ଉଭୟପକ୍ଷରୁ ଅଗଣିତ ସୈନ୍ୟ ମୃତାହତ ହେବେ । ନିରୀହ ଜନସାଧାରଣଙ୍କ ଉପରେ ଏହାର କୁପ୍ରଭାବ ପଡ଼ିବ । ଏସବୁ ତାଙ୍କର ସ୍ୱାର୍ଥପାଇଁ ହେବ । ରାଜା ପ୍ରଜାର ମଙ୍ଗଳ କରେ । ସେଥିପାଇଁ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦିଏ । ନିଜର ସ୍ୱାର୍ଥପାଇଁ ଚିନ୍ତାକଲେ ଅନ୍ୟର ସ୍ୱାର୍ଥ ଗୌଣ ହୋଇଯାଏ । ରାଜା ବା ଶାସକ ଯଦି ନିଜ ସ୍ୱାର୍ଥପାଇଁ କାମ କରେ, ଦେଶ ଧ୍ୱଂସ ଆଡ଼କୁ ଆଗେଇ ଆସେ । ସେଥିରୁ ଶାସକ ନିବୃତ୍ତ ହେବା ଉଚିତ । ଡଗା ଗାମିନୀ ଭାବିଲେ—ଉମାକୁ ବିବାହ କରିବାକୁ ଯେତେବେଳେ ସେ ସ୍ଥିର କରିଛନ୍ତି, ତାଙ୍କ ନିଷ୍ପତ୍ତିରେ ସେ ଅଟଳ ରହିବେ । ରାଜଗାଦି ସହିତ ଏହାର ସମ୍ପର୍କ ନାହିଁ । ସେ ନିଜେ ଯିବେ । ତାଙ୍କର ବୁଦ୍ଧି ଖଟାଇ

ତାକୁ ଉଦ୍ଧାର କରିବେ । ସେଥିପାଇଁ ସେ ଯଦି ଧ୍ୱଂସ ହୋଇଯାଆନ୍ତି, କାହାର କିଛି ଯିବଆସିବ ନ ଥିବ । ଏ ସିଦ୍ଧାନ୍ତରେ ପହଞ୍ଚିଲା ପରେ ସେ ତାଙ୍କର ଗୁପ୍ତଚରମାନଙ୍କୁ ପଠାଇଲେ । ଉମା ବିଷୟରେ ଠିକଣାଖି ଖବର ସଂଗ୍ରହ କରିବାକୁ ଆଦେଶ ଦେଲେ ।

ସମସ୍ତ ଖବର ଜାଣିବା ପରେ ସେ ତାଙ୍କ ସାନ ଭାଇକୁ ଡକାଇଲେ । ତାଙ୍କୁ ରାଜ୍ୟର ସମସ୍ତ ଦାୟିତ୍ୱ ଅର୍ପଣ କଲେ । ତାପରେ ସମସ୍ତଙ୍କ ଠାରୁ ବିଦାୟ ନେଇ ସେ ଦେଶ ଛାଡ଼ି ଚାଲିଗଲେ । କୁଆଡ଼େ ଯାଉଛନ୍ତି ସେ ବିଷୟରେ ଅନୁସନ୍ଧାନ କି ଅନୁଧ୍ୟାନ ନ କରିବାକୁ ଭାଇକୁ କହିଗଲେ ।

ନିଜ ରାଜ୍ୟ ଛାଡ଼ି ଗଲା ପରେ ପ୍ରଥମେ ସେ କେତୋଟି ପଡ଼ୋଶୀ ରାଜ୍ୟ ବୁଲିଲେ । ସବୁଠି ସେ ଉମା ରୂପର ପ୍ରଶଂସା ଶୁଣିବାକୁ ପାଇଲେ । ଶେଷରେ ସେ ପାଣ୍ଡୁ ବାସୁଦେବଙ୍କ ଦରବାରରେ ଉପସ୍ଥିତ ହେଲେ । ସେଠି ରାଜାଙ୍କ ସୈନ୍ୟ-ବାହିନୀରେ ନିଯୁକ୍ତି ପାଇଁ ନିବେଦନ କଲେ । ରାଜା ଓ ତାଙ୍କର ସାତପୁଅ ଯୁବା ଉଗା ଗାମିମାଙ୍କ ବିରତ୍ୱ ପରୀକ୍ଷା କଲେ । ସେ ଯେ ଅସ୍ତ୍ର ଚାଳନାରେ ଏକାନ୍ତ ଧୁରନ୍ଧର ଏବଂ ତାଙ୍କ ସୈନ୍ୟ-ବାହିନୀରେ ତାଙ୍କ ସମକକ୍ଷ ଯୋଦ୍ଧା କେହି ନାହାନ୍ତି, ଏହା ପ୍ରମାଣିତ ହୋଇଗଲା । ଆଗ୍ରହ ସହକାରେ ରାଜା ପାଣ୍ଡୁ ବାସୁଦେବ ତାଙ୍କୁ ସୈନ୍ୟ ବିଭାଗର ଏକ ଉଚ୍ଚପଦସ୍ଥ ଚାକିରିରେ ରଖି ଦେଲେ ।

ତାଙ୍କର କାର୍ଯ୍ୟ ନିପୁଣତା ରାଜା ଓ ସାତ ଭାଇଙ୍କୁ ମୁଗ୍ଧ କଲା । ସେ ଯେ ଅଦ୍ୱିତୀୟ ବୀର ଓ ବିଶ୍ୱସ୍ତ, ଏଥିରେ କାହାର

ସନ୍ଦେହ ନଥିଲା । ନିଜର ସ୍ୱାର୍ଥ ପ୍ରତି ସେ କେବେ ଆଗ୍ରହୀ ନୁହନ୍ତି । ଏକଥା ରାଜା ପାଣ୍ଡୁ ବାସୁଦେବ ଓ ତାଙ୍କ ସାତପୁଅଙ୍କର ଦୃଢ଼ ଧାରଣା ହେଲା । ତେଣୁ ସେମାନେ ନିଜ ନିଜ ଭିତରେ ପରାମର୍ଶ କରି ଉଗା ଗାମିନୀଙ୍କୁ ଗମ୍ବୁଜର ଦାୟିତ୍ୱ ଦେଇଦେଲେ ।

ଗମ୍ବୁଜ ଜଗୁଥିବା ସୈନ୍ୟ ବାହିନୀର ମୁଖ୍ୟ ଦାୟିତ୍ୱ ଗ୍ରହଣ କଲା ପରେ ଉଗା ଗାମିନୀ ସବୁଦିନ ଗମ୍ବୁଜ ପାଟରେ ବସି ରହେ । ଗମ୍ବୁଜ ଉପରକୁ ଚାହିଁଥାଏ । ସେ ଅତ୍ୟନ୍ତ କର୍ତ୍ତବ୍ୟ ପରାୟଣ ହୋଇଥିବାରୁ ଏ କାର୍ଯ୍ୟ କରୁଛନ୍ତି । ଏହା ସବୁ ସୈନ୍ୟମାନଙ୍କର ଧାରଣା । ତେଣୁ ଏ ବିଷୟରେ କେହି ତାଙ୍କୁ ଅବିଶ୍ୱାସ କଲେ ନାହିଁ । ଦିନ ପରେ ଦିନ ମାସ ପରେ ମାସ ଚାଲିଗଲା । ଉମାକୁ ଦେଖିବା ତ ଦୂରର କଥା, ତାର ଛାଇ ବି ସେ ଦେଖିବାକୁ ପାଇଲେ ନାହିଁ । ଏପରି ଅବସ୍ଥା ଚାଲିଲେ, ସେ ଯେ ଉମାକୁ ବିବାହ କରିବେ, ଏହା ତାଙ୍କୁ ଅସମ୍ଭବ ବୋଲି ଲାଗିଲା ।

ସେ ଦେଖିଲେ—ଗମ୍ବୁଜ ଉପରେ ଥିବା ଗୃହକୁ କେବଳ ଧାଈଟିର ଅବାଧ ପ୍ରବେଶ ଅଛି । ତାଛଡ଼ା ସେଠାକୁ କେହି ଯିବାର ନାଁ ଗନ୍ଧ ଉଠେ ନାହିଁ । ଉମା ପାଖକୁ ଯିବାକୁ ହେଲେ, ଧାଈକୁ ହାତ କରିବାକୁ ହେବ । ସେ ଜାଣିଥିଲେ—ଧାଈଟି ଅତ୍ୟନ୍ତ ବିଶ୍ୱାସୀ । ପ୍ରଲୋଭନର ସେ ବହୁ ଦୂରରେ । ତାକୁ କିପରି ହାତ କରିବେ, ଯେଇଟା ତାଙ୍କର ପ୍ରଥମ ଚିନ୍ତା ହେଲା । ଗଭୀର ଭାବରେ ଚିନ୍ତା କଲେ, ସବୁ କାମ ହାସଲର ବାଟ ମିଳିଯାଏ । ଧାଈଟି ରାଜଜେମା ଉମା ପ୍ରତି ଅତ୍ୟନ୍ତ ଅନୁରକ୍ତ । ଉମା ଯେମିତି ତା'ର ପ୍ରାଣ । ଗମ୍ବୁଜରୁ ଧାଈ ତଳକୁ ଆସେ । କାହା ସାଥୀରେ ସେ ମିଶେ ନାହିଁ । ପଦେ କଥା ବି କହେ ନାହିଁ । ଏକଥା ସେ ଲକ୍ଷ୍ୟ କଲେ । ନିଜର ପଦ ମର୍ଯ୍ୟାଦାର ବାହ୍ୱା ନେଇ

ସେ ଧାଈର ଭଲ ମନ୍ଦ ବୁଝିବାକୁ ଲାଗିଲେ । ସମସ୍ତେ ଭାବିଲେ—ଏତ ସୈନ୍ୟାଧ୍ୟକ୍ଷର କର୍ତ୍ତବ୍ୟ । ତେଣୁ ଏଥି ପ୍ରତି କାହାର ଅବିଶ୍ୱାସ କରିବାର ନ ଥିଲା । କିଛିଦିନ କଥାବାର୍ତ୍ତା ପରେ ଉଭୟଙ୍କର ସମ୍ପର୍କ ନିବିଡ଼ ହୋଇ ଆସିଲା । ତେଣୁ ଉମାର ଖବର ବୁଝିବାରେ ତାଙ୍କର ଆଉ ଅସୁବିଧା କିଛି ହେଲା ନାହିଁ । ଧାଈଟି ଖୁବ୍ ଚତୁର । ଏଇ କଥାବାର୍ତ୍ତାରେ ଉଗ୍ରା ଗାମିନୀର ଉମା ପ୍ରତି ଦୁର୍ବଳତା ସେ ଲକ୍ଷ୍ୟ କଲା ।

ଉମା ବେଳେ ବେଳେ ଅତ୍ୟନ୍ତ ମ୍ରିୟମାଣ ହୋଇ ଆକାଶକୁ ଅନାଇ ରହେ । ଏକଥା ଧାଈ ଦେଖେ । ରାଜଜେମାର ଜୀବନ ନଷ୍ଟ ହୋଇଯିବ, ଏକଥା ଧାଈକୁ ବିବ୍ରତ କରେ । ସେ କଥା ସେ ବେଳେ ବେଳେ ଉଗ୍ରା ଗାମିନୀକୁ କହେ ।

ଉଗ୍ରା ଗାମିନୀ ଧାଈଟିର ହୃଦୟ କିଣି ନେଲେ । ଉମା ସାଥିରେ ତାଙ୍କୁ ଭେଟ କରାଇବାକୁ ଅନୁରୋଧ କଲେ । ଧାଈଟି କହିଲା—"ବାପରେ ମୋର ଆପତ୍ତି ନାହିଁ । ଯଦି ଏକଥା ପ୍ରକାଶ ପାଇବ, ତୋର ଓ ମୋର ଶିରଚ୍ଛେଦ ହେବ । ମୋ ଜୀବନ ପ୍ରତି ମୋର ଲୋଭ ନାହିଁ । ତୋ ଭଳି ଯୁବକର ମୃତ୍ୟୁ ପାଇଁ ମୁଁ ଯେ ନିମିତ୍ତ ହେବି । ସେଥିପାଇଁ ମୋର ଭୟ ।"

ଉଗ୍ରା ଗାମିନୀ ତାକୁ ବୁଝାଇ କହିଲେ—"ତେଣୁ ଏକଥା, ପ୍ରକାଶ ପାଇବାର ପ୍ରଶ୍ନ କାହିଁକି ଉଠୁଛି । ମୁଁ ତ ଏଠାରେ ଜଗୁଥିବା ସୈନ୍ୟ ବାହିନୀର ମୁଖ୍ୟ । ସବୁ ଖବର ଅନ୍ତର ମୋ ମାଧ୍ୟମରେ ରାଜାଙ୍କ ପାଖକୁ ଯିବ । ତୁମେ ମୋତେ ବିଶ୍ୱାସ କର । ଏକଥା କେହି ଜାଣିବେ ନାହିଁ ।"

ଉମାକୁ ତାର ମାନସିକ ଯନ୍ତ୍ରଣାରୁ ରକ୍ଷା କରିବା ପାଇଁ ଧାଈଟି ଉଗ୍ରା ଗାମିନୀ କଥାରେ ରାଜି ହେଲା ।

ସେଦିନ ଥାଏ ଅମାବାସ୍ୟା । ପ୍ରବଳ ବର୍ଷା ଚାଲିଥାଏ । ମୁହଁକୁ ମୁହଁ ଦେଖାଯିବାର ପ୍ରଶ୍ନ ନାହିଁ । ଧାଈ ଗୋଟିଏ ଲମ୍ବା ଦଉଡ଼ି ଗମ୍ବୁଜ ଉପରୁ ତଳକୁ ପକାଇ ଦେଲା । ଡିଗା ଗାମିନି ତା ସାହାଯ୍ୟରେ ଗମ୍ବୁଜ ଉପରକୁ ଗଲା । ସେଠି ଉମା ସାଥୀରେ ଦେଖା ହେଲା । ଉମା ଡିଗା ଗାମିନି ବିଷୟରେ ଧାଈଠାରୁ ସବୁ ଶୁଣିଥିଲା । ତେଣୁ ଦୁଇଜଣ ପରସ୍ପରକୁ ପାଇ ଖୁବ୍ ଖୁସି ହେଲେ ।

ଉମାକୁ ନେଇ ପଳାଇବାର ବହୁ ଯୋଜନା ଡିଗା ଗାମିନି କଲେ । କୌଣସିଟି ଫଳବନ୍ତ ହେଲା ନାହିଁ । ମଉକା ଦେଖି ଡିଗା ଗାମିନି ଉମା ପାଖକୁ ଯାଆନ୍ତି । ଏକଥା କେହି କେବେ ଜାଣି ପାରିଲେ ନାହିଁ । ଧୂଆଁରୁ ନିଆଁର ଉପସ୍ଥିତି ଜଣାଯାଏ । ଉମାର ଦେହେରର ପରିବର୍ତ୍ତନ ତାର ପୁରୁଷ ସମ୍ପର୍କରେ ଆସିବାର ପ୍ରମାଣ । ଏହା ଭାଇମାନଙ୍କୁ ବ୍ୟତିବ୍ୟସ୍ତ କଲା । କଥାଟା ଉମା ଓ ଧାଈ ଜାଣିଲେ । ଡିଗା ଗାମିନିଙ୍କୁ ପଳାଇବା ପାଇଁ ସେମାନେ ପରାମର୍ଶ ଦେଲେ । କିନ୍ତୁ ଡିଗା ଗାମିନି ତାହା ଗ୍ରହଣ କଲେ ନାହିଁ । ଭାଇମାନେ ଡିଗା ଗାମିନିକୁ ଦାୟୀ କଲେ । ଏଥିପାଇଁ ସେମାନେ ତାର ଶିର ଛେଦ କଲେ ।

ଉମାକୁ ହତ୍ୟା କରିବାକୁ ବଡ଼ ଛ ଭାଇମାନେ ଯେତେବେଳେ ନିଷ୍ପତ୍ତି ନେଲେ, ଅଭୟ ଏଥିରେ ହସ୍ତକ୍ଷେପ କଲା । ତାର ଯୁକ୍ତି ହେଲା—ଉମା ତ ସେମାନଙ୍କର ଅକ୍ତିଆରରେ । ତାର ପୁଅ ହେଲେ ତାକୁ ହତ୍ୟା କରାଯିବ । ଉମାକୁ ହତ୍ୟା କରି ଲାଭ କ'ଣ ହେବ ?

ଅଭୟ କଥା ରହିଲା । ଗମ୍ବୁଜ ଉପରକୁ ଯିବା ଆସିବାର କଟକଣା ଅଧିକ ଟାଣ କରି ଦିଆଗଲା ।

ଠିକ୍ ସମୟରେ ଉମାର ପୁଅଟିଏ ହେଲା । ପ୍ରସବ ପରେ ପରେ ତା'ର ଚେତା ବୁଡ଼ିଗଲା । ପାଖରେ ବଗବର ଧାଈଟି ଥାଏ ।

ନବଜାତ ଶିଶୁଟିର ଚେହେରା ଅତ୍ୟନ୍ତ ଲୋଭନୀୟ । ତାକୁ ଦେଖି ଧାଈଟିର ହୃଦୟ ତରଳିଗଲା । ସେ ବସି ଭାବିଲା— ଉମାକୁ ସେ ପାଳିଛି । ତା ଛଡ଼ା ଉମା ସଂସାରରେ କାହାକୁ ଜାଣେ ନାହିଁ । ଡଗା ଗାମିନୀ ସହ ଉମାର ଯେଉଁ ସମ୍ପର୍କ, ତାହା କେବଳ ତା'ର ଯୋଗୁ ହିଁ ସମ୍ଭବପର ହୋଇଥିଲା । ସେ ହିଁ ଏ ପିଲାର ସଂସାରକୁ ଆଗମନର କାରଣ । ଏଇନେ ସେ ହିଁ ଏ ପିଲାର ଜନ୍ମବାର୍ତ୍ତା ବହନ କରିବ । ତା'ର ଆଗରେ ଏ ପିଲାର ମୃତ୍ୟୁ ହେବ । ଉମାର ସୁଖର ଆଳରେ ସେ ଡଗା ଗାମିନୀର ପ୍ରବଞ୍ଚନାର ଶୀକାର ହେଲା । କି ସୁଖ ସେ ଉମାକୁ ବା ଦେଲା ? ପିଲାଟିକୁ ହତ୍ୟା କରାଗଲେ, ଉମା ଦୁଃଖର ସୀମା ରହିବ ନାହିଁ । କାନ୍ଦି କାନ୍ଦି ସାରା ଜୀବନ ତାର ବିତିଯିବ । ସବୁ ପାଇଁ ସେ ହିଁ ଦାୟୀ । ସେ ପିଲାଟି ମୁହଁକୁ ଯେତିକି ଯେତିକି ଚାହିଁଲା, ତାର ହୃଦୟ ତା ପ୍ରତି ସେତିକି ସେତିକି କରୁଣାରେ ପୂର୍ଣ୍ଣ ହୋଇଗଲା । ପିଲାଟିକୁ କିପରି ରକ୍ଷା କରିବ, ସେଇ କଥା ତା ମୁଣ୍ଡରେ ପଶିଲା ।

ସେ ଆଉ ଡେରି କଲା ନାହିଁ । ଆମ୍ବ ଝୁଡ଼ିଟିଏ ଆଣିଲା । ତଳେ କିଛି ଆମ୍ବ ଥୋଇ ତା ଉପରେ ନବଜାତ ଶିଶୁକୁ ଶୁଆଇ ଦେଲା । ତା ଉପରେ ପୁଣି ଆମ୍ବ କିଛି ରଖିଲା । ଝୁଡ଼ିକୁ ଧରି ସେ ତାର ଘରକୁ ଗଲା । ଭଗବାନଙ୍କ ଗତି ବିଚିତ୍ର । ଘରେ ପହଞ୍ଚି ଦେଖିଲା— ବୋହୂ ତାର ପୁଅଟିଏ ଜନ୍ମ କରି ଅଚେତ ହୋଇ ପଡ଼ିଛି । ଏହା ଏକ ସୁବର୍ଣ୍ଣ ସୁଯୋଗ । ସେ ଭାବିଲା । ନେଇଥିବା

ନବଜାତ ଶିଶୁକୁ ବୋହୂ ପାଖରେ ଶୁଆଇ ଦେଲା । ବୋହୂର ପୁଅକୁ ପୁଣି ଝୁଡ଼ିରେ ଧରି ଧାଇଁଲା ଗମ୍ବୁଜ ଉପରକୁ । ସେଇ ପୁଅକୁ ଉମା ପାଖରେ ଶୁଆଇ ଦେଲା । ତାପରେ ଉମାକୁ ଚେତା କଲା । ଉମା ଚେତା ହେବା ପରେ ପୁଅ ହେବା କଥା ସେ ସାତଭାଇଙ୍କୁ ଜଣାଇ ଦେଲା । ପୁଅକୁ ଦେଖି ଉମା ଖୁବ୍ କାନ୍ଦିଲା । ଏମିତିକି ବେଳେବେଳେ ତାର ଚେତା ବୁଡ଼ି ଯାଉଥିଲା ।

ଉମାର ପୁଅ ହୋଇଥିବା ଖବର ପାଇ ସାତ ଭାଇମାନେ ଗମ୍ବୁଜକୁ ଧାଇଁ ଆସିଲେ । ନ ହବ୍ବର ନ ଗର୍ବର ସେମାନେ ପିଲାଟିକୁ ନେଇ ନେଲେ । ସାଥୀ ସାଥୀ ତାକୁ ହତ୍ୟା କଲେ । ସେମାନେ ଏଥର ଭାରି ଖୁସି । ଭବିଷ୍ୟତ ଯେ ସେମାନଙ୍କର ନିଷ୍କଣ୍ଟକ, ଏଥିରେ ସେମାନେ ଆଶ୍ୱସ୍ତ ।

ପାଖରୁ ଯେପରି ଭାବରେ ସେମାନେ ତାର ପୁଅକୁ ଛଡ଼ାଇ ନେଲେ ଆଉ ତାକୁ ଯେପରି ହତ୍ୟା କଲେ, ସେଥିରେ ଉମା ଜୀବନ ନ ରଖିବା ପାଇଁ ସ୍ଥିର କଲା । ସେତିକି ବେଳୁ ସେ ଆଉ କାନ୍ଦିଲା ନାହିଁ । ଚୁପ୍ ହୋଇ ବସି ରହିଲା ।

ଭାଇମାନେ ଗମ୍ବୁଜରୁ ଚାଲିଗଲେ । ଗମ୍ବୁଜ ଉପରେ ପୁଣି ସେହି ଦୁଇଜଣ । ଉମା ଓ ଧାଈ । ଧାଈ ଉମାକୁ ବୁଝାଇବାକୁ ଚେଷ୍ଟାକଲା । ଉମା କିଛି ଶୁଣିଲା ନାହିଁ । ଖାଲି ଚୁପ୍ ହୋଇ ବସି ରହିଲା ।

ଧାଈ ଦେଖିଲା—ସତ କଥା ଉମା ଆଗରେ ପ୍ରକାଶ ନ କଲେ, ଉମା ଯେ ଜୀବନ ହାରିଦେବ । ଏଥିରେ ସନ୍ଦେହ ନାହିଁ । ତେଣୁ ତାକୁ ସେ କହିଲା—ତୋ ପୁଅ ବଞ୍ଚିଛି । ମୁଁ ତାକୁ ଏଠୁ ନେଇ ମୋ ବୋହୂ ପାଖରେ ଛାଡ଼ି ଦେଇଛି । ଯେ ମଲା, ସେ

ମୋ ନାତି । ଏକଥା ମୋ ଛଡ଼ା ଆଉ କେହି ଜାଣି ନାହାନ୍ତି । ତୁ ଏଥର ହେଲୁ ବିଶ୍ୱାସୀ ବ୍ୟକ୍ତି । କଥାଟା ତୋ ମୋ ଭିତରେ ଆବଦ୍ଧ ରହୁ । ତୁ ଯେପରି କାନ୍ଦ ଗଉଡ଼ୁଛୁ, ସେଇମିତି କରୁଥା । ତୋତେ ଦେଖି ଘରମାନଙ୍କ ମନରେ ଟିକିଏ ହେଲେ ସନ୍ଦେହ ସୃଷ୍ଟି ନ ହେଉ ।

ଉମା ବକ୍ ବକ୍ ହୋଇ ଧାଈର ମୁହଁକୁ ଚାହିଁ ରହିଲା । ଯେ ପର ପିଲାକୁ ବଞ୍ଚାଇବା ପାଇଁ ନିଜ ନାତିକୁ ବଳି ଦେଇ ପାରେ, ସେ ମଣିଷ ନୁହେଁ, ଦେବତା । ଉମାର ଏହାହିଁ ଧାରଣା ହେଲା । ପିଲା ମୃତ୍ୟୁ ପାଇଁ ସେ ଯେ ଅତ୍ୟନ୍ତ ଦୁଃଖୀ, ଏଇ ପ୍ରହସନ ସେଇଦିନୁ ଉମା ଜାହିର କରି ରଖିଲା ।

ଧାଈ ଘରେ ଉମା ପୁଅ ବଢ଼ିବାକୁ ଲାଗିଲା । ଧାଈଟି ତାର ନାତିର ନାଁ ପାଣ୍ଡୁବାପା ରଖିଲା । ଏବେ ଧାଈଟି ବେଶି ସମୟ ତା ଘରେ ରହେ । ନାତିର ଯତ୍ନ ନିଏ ।

ପିଲାଟି ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲା । ତାର ବୁଦ୍ଧି ତ ବିଚକ୍ଷଣ । ସେ ବି ଆଜନ୍ମ ନେତା । ଏକଥା ସାହି ପଡ଼ିଶା ଓ ଗାଁବାଲା ଉପଲବ୍ଧି କଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ଭାରି ଲୋକପ୍ରିୟ ହୋଇ ଗଲା । ଆପଦ ବିପଦରେ ଲୋକେ ତା' ପାଖକୁ ଧାଇଁଲେ । ତା ଯୋଗୁ ଆଖ ପାଖ ଅଞ୍ଚଳରେ କଳି ତକରାଳ ହେଲା ନାହିଁ । ଲୋକେ ତାକୁ ଦେବତା ଭଳି ମାନନ୍ତି । ତା କଥା ତଳେ ପକାନ୍ତି ନାହିଁ ।

ପିଲାଟି ଏବେ ଖାଲି ଯୁବକ ନୁହେଁ । ସେ ଅଞ୍ଚଳର ଯୁବକମାନଙ୍କର ଦଳପତି । ଦିନେ ସେ ଗାଁକୁ ଜଣେ ଜ୍ୟୋତିଷ ଆସିଥିଲା । ସମସ୍ତଙ୍କର ହାତ ଦେଖିଲା । ପାଣ୍ଡୁବାପା ତାର

ହାତ ତାକୁ ଦେଖାଇଲା । ସେ ପାଣ୍ଡୁବାସୁକୁ ଅତି ବିଶ୍ୱସ୍ତ ଭାବରେ କହିଲା—"ତୁମେ ଋଷିର ପୁଅ ନୁହଁ କି ଧୀବରର ନାତି ନୁହଁ । ତୁମେ ଉମା ଦାସୀଟା ଗର୍ଭରୁ ଜନ୍ମ ହୋଇଛ । ପଡ଼ୋଶୀ ରାଜା ଡିଗା ଗାମିଣୀଙ୍କର ପୁଅ । ଏକଥା କେହି ଜାଣି ନାହାନ୍ତି । ଏକଥା ଜାଣିବାକୁ କାହାକୁ ସୁଯୋଗ ଦିଅ ନାହିଁ । ଏଠି ତୁମେ ରହିଲେ ବିପଦ ଅଛି । ଯଦି ତୁମର ପରିଚୟ ପ୍ରକାଶ ପାଏ, ତୁମକୁ ରାଜାଙ୍କର ପୁଅମାନେ ହତ୍ୟା କରିବେ । ତୁମର ବାପ ଚମ ରାଜ୍ୟର ରାଜା । ସେ ଅପୁତ୍ରିକ । ତୁମେ ଏଇ ମୁଦିଟି ନେଇ ଯାଅ । ଚମ ବାପଙ୍କୁ ଦେଖାଇବ । ସେ ତୁମକୁ ଚିହ୍ନିବେ । ତୁମେ ସେଠୁ ସୈନ୍ୟ ସଂଗ୍ରହ କରି ଶ୍ରୀଲଙ୍କାକୁ ଚମ କରଗତକୁ ଆଣିବ । ଯେଉଁ ମାମୁଁମାନେ ଚମ ବାପାଙ୍କୁ ହତ୍ୟା କରିଛନ୍ତି, ତୁମେ ତାର ପ୍ରତିଶୋଧ ନିଅ ।"

କଥାଟା ଶୁଣିବା ପରେ ପାଣ୍ଡୁବାସୁ ତା'ଠାରୁ ମୁଦିଟା ନେଲା । ସେଠି ଆଉ ରହିଲା ନାହିଁ । ସେଇ ମୁହୂର୍ତ୍ତରୁ ସେ ସେଠୁ ପଳାଇଗଲା । ସିଧା ସେ ତା'ର ରାଜ୍ୟକୁ ଗଲା । ବାପଙ୍କ ସାଥିରେ ଦେଖାକଲା ।

ମୁଦି ଦେଖି ରାଜା ପୁତ୍ରର ପରିଚୟ ପାଇଲେ । ସେ ତ ଅପୁତ୍ରିକ ଥିଲେ । ନିଜର ସିଂହାସନ କାହାକୁ ଦେବେ, ତାହା ତାଙ୍କର ଚିନ୍ତା ଥିଲା । ପୁତ୍ରକୁ ଦେଖି ସେ ମହାଖୁସି । ମହା-ସମାରୋହରେ ସେ ପାଣ୍ଡୁବାସୁକୁ ଯୁବରାଜ ପଦରେ ଅଭିଷିକ୍ତ କରିଦେଲେ ।

ପାଣ୍ଡୁବାସୁ ଅକଳନ ସୈନ୍ୟ ସଂଗ୍ରହ କଲା । ସେଥିରେ ରାଜା ତାଙ୍କୁ ବିଶେଷ ସାହାଯ୍ୟ କଲେ । ପ୍ରଥମେ ସେ ତାର ମାମୁଁମାନଙ୍କ ରାଜ୍ୟ ଆକ୍ରମଣ କଲା । ଭୟଙ୍କର ଯୁଦ୍ଧରେ ସେ ବି

ଜିତିଲି । ସବୁ ମାମୁଁମାନେ ବନ୍ଦୀ ହେଲେ । ସେ ମା'କୁ ତା'ର ଗମ୍ଭୁଜରୁ ଉଦ୍ଧାର କଲା । ଅଭୟଙ୍କୁ ଅଭୟ ଦେଇ ଆଜି ସବୁ ମାମୁଁମାନଙ୍କୁ ହତ୍ୟା କଲା ।

ଆସ୍ତେ ଆସ୍ତେ ସେ ଲଙ୍କାର ସମସ୍ତ ଶ୍ରେଷ୍ଠ ଶ୍ରେଷ୍ଠ ରଜା-ମାନଙ୍କୁ ପରାସ୍ତ କରି ସମଗ୍ର ଶ୍ରୀଲଙ୍କାର ଅଧୀଶ୍ୱର ହୋଇଥିଲା ।

---

# ଉରୁ ସିଡୋନା

ଦୁଇ ହଜାର ପାଞ୍ଚଶହ ବର୍ଷ ତଳର କଥା । ସେତେବେଳେ ଶ୍ରୀଲଙ୍କା ଗୋଟିଏ ରାଜ୍ୟ ନ ଥିଲା । ଏହା ବହୁ ରାଜ୍ୟରେ ବିଭକ୍ତ ହୋଇଥିଲା । ପ୍ରତି ରାଜ୍ୟରେ ଜଣେ ଜଣେ ରଜା ଥିଲେ ।

ସେତେବେଳେ ଗୋଟିଏ ରାଜ୍ୟର ରାଜା ଅତି ବୁଢ଼ା ହୋଇଯାଇ ଥିଲେ । ତାଙ୍କର ଗୋଟିଏ କୋଳି ପୁଅ । ସେ ବି ପିଲା । ରାଜାଙ୍କର ଗୋଟିଏ ସାନ ଭାଇ । ସେ ସୁଦକ୍ଷ । ପାରିବାର ମଣିଷ । ଲୋକପ୍ରିୟ ବି । ତାର ଅନୁଚର ଅନେକ । ତା ପାଇଁ ପ୍ରାଣ ଦେବାକୁ ସେମାନେ ବି ପ୍ରସ୍ତୁତ । ରାଣୀ ଏସବୁ ଜାଣନ୍ତି । ସେଥିପାଇଁ ରାଣୀଙ୍କର ଭାରି ଭୟ—ରଜାଙ୍କ ମୃତ୍ୟୁ ପରେ, ସାନ ଭାଇ ତାଙ୍କର ରାଜଗାଦି ମାଡ଼ି ବସିବ । ପୁଅଟି ବିଚରା ତାଙ୍କର ଅନାଥ ହୋଇଯିବ । ତେଣୁ ପୁଅକୁ କିପରି ନିଷ୍କଣ୍ଟକ କରିବେ, ସେଇ ଚିନ୍ତାରେ ସେ ଅହରହ ବ୍ୟସ୍ତ, ବିବ୍ରତ । ଯେ କୌଣସି

ପ୍ରକାରରେ ତାଙ୍କ ବଧଅରକୁ ସଂସାରରୁ ବିଦାୟ କରିବାକୁ ହେବ, ଏହା ଥିଲା ତାଙ୍କର ଶେଷ ନଷ୍ପତ୍ତି ।

ରାଜାଙ୍କ ସ୍ଥାନ ଭାଇ ଯେ ଉତ୍ତମ ମଣିଷ । ରାଜଗାଦି ପାଇଁ ସେ ଯେ ଲାଳସାହୀନ । ଏକଥା ରାଣୀ ହୃଦୟରକୁ ନେଲେ ନାହିଁ । ସ୍ଥାନ ଭାଇଟି ତାଙ୍କ ପୁଅକୁ ଭଲ ପାଏ । ସାଧାରଣ ଭାବଠାରୁ ସେ ଊର୍ଦ୍ଧ୍ୱରେ । ପୁତୁରା ପାଇଁ ପ୍ରାଣ ଦେବାକୁ ସେ ପ୍ରସ୍ତୁତ । ଏକଥା ପ୍ରତି ରାଣୀ ଅନ୍ଧ ଥିଲେ । ତାଙ୍କ ନଷ୍ପତ୍ତିକୁ ସେ କିପରି କାର୍ଯ୍ୟକାରୀ କରିବେ, ସେଥିପାଇଁ ସେ ପାଗଳ ହୋଇ ଉଠିଲେ ।

ମଣିଷ ଥରେ ଜଣକୁ ସନ୍ଦେହ କଲେ, ତାର ଆଖିକୁ ସନ୍ଦେହ ମଣିଷର ଗତିବିଧି ତା'ର ସମସ୍ତ କାର୍ଯ୍ୟ ସନ୍ଦେହାତ୍ମକ ହୋଇଯାଏ । ରାଣୀଙ୍କୁ ଏବେ ଦିଅରଙ୍କର କୌଣସି କାମ ପସନ୍ଦକୁ ଆସେ ନାହିଁ । ସବୁ ବିଷମୟ ଲାଗେ । ଏଥିରେ ତାର ଯେ ପ୍ରଚ୍ଛନ୍ନ ଚକ୍ରାନ୍ତ ଲାଗି ରହିଛି ରାଣୀ ତାହା ଅନୁଭବ କରେ ।

ରାଜକ୍ଷେତରୁ ଧାନ କଟା ହେଉଥିଲା । ବହୁ ଲୋକଙ୍କୁ ଏଥିପାଇଁ ନିୟୋଜିତ କରାଯାଇଥିଲା । କାମ ତଦାରଖ କରିବାକୁ ଦିନେ ରାଜାଙ୍କ ସାନ ଭାଇ ରାଜକ୍ଷେତକୁ ଚାଲିଗଲେ । ଲୋକଙ୍କର କାମ ଦେଖୁ ଦେଖୁ ସେଇଠି ସେ ରହିଗଲେ । ଦ୍ୱିପ୍ରହର ଆସି ହେଲା, ଉଆସକୁ ଫେରି ଭୋଜନ କରିବାର ପ୍ରୟାସ ସେଦିନ ତାଙ୍କର ନ ଥିଲା । ଏତିକବେଳେ ରାଜାଙ୍କ ପୁଅ ସେଠି ପହଞ୍ଚି ଗଲା । ଦାଦି ପୁତୁରାଙ୍କ ସମ୍ପର୍କ ତ ଅତି ନିବିଡ଼ । ଉଭୟ ଉଭୟଙ୍କ ପ୍ରତି ଅନୁରକ୍ତ । ପୁତୁରାକୁ ଦେଖି ଦାଦିଟି ବେଶ୍ ଆନନ୍ଦିତ । ଉଭୟେ କଥାବାର୍ତ୍ତାରେ ମଜ୍ଜି ଗଲେ । ଖାଇବାକୁ ଚ୍ଛିନ୍ତା ଆସିଲେ ନାହିଁ ।

ଖାଇବା ବେଳ ଗଡ଼ ଆସିଲାଣି । ରାଜାଙ୍କ ସାନ ଭାଇ ଫେରିଲେ ନାହିଁ । ରାଣୀ ଭାବିଲେ—ଏ ଏକ ମଉକା । ଏଥର ସେ ସୁଯୋଗ ନେବେ । ସେ ତ ଏବେ ଅନ୍ଧ । ପୁଅ କୁଆଡ଼େ ଯାଇଛି ସେ କଥା ହିସାବକୁ ନେଲେ ନାହିଁ । ତେଣୁ ବିପ୍ରହର ଭୋଜନ ସହିତ କଟ୍ଟି ମିଠା ଆମ୍ବ ସେ ରାଜାଙ୍କ ସାନ ଭାଇଙ୍କ ମଣୋହି ପାଇଁ ପଠାଇ ଦେଲେ । ସେଠି ଯେ ତାଙ୍କ ପୁଅ ଅଛି, ସେ କଥା ଅବଶ୍ୟ ସେ ଜାଣି ନ ଥିଲେ ।

ଦାଦି ପୁତୁରା କଥାବାର୍ତ୍ତା ବେଳେ ଖାଇବା ଜିନଷ ସେଠି ପହଞ୍ଚିଗଲା । ଖାଦ୍ୟ ସାମଗ୍ରୀ ସହିତ ଆସିଥିବା ଆମ୍ବକୁ ଦେଖି ଯୁବରାଜ ଖୁବ୍ ଖୁସି । ସେ ଦାଦାଙ୍କ ଅନୁମତି ଲୋଡ଼ିଲେ ନାହିଁ । ଗୋଟିଏ ଆମ୍ବ ସେଥିରୁ ଉଠାଇ ନେଲେ । ଅବିଳମ୍ବେ ତାକୁ ଖାଇଦେଲେ । ପର ମୁହୂର୍ତ୍ତରେ ସେ ସେଇଠି ଟଳି ପଡ଼ିଲେ ।

ଏ ଘଟଣା ଦେଖି ରାଜାଙ୍କ ସାନ ଭାଇ ସ୍ତମ୍ଭୀଭୂତ । ନିର୍ବାକ । ଚିନ୍ତାଗ୍ରସ୍ତ । ସେ ହେଳା ନ କରି ତାଙ୍କ ଖାଇବା ପାଇଁ ଆସିଥିବା ଆମ୍ବକୁ ସେ ପରୀକ୍ଷା ପାଇଁ ପଠାଇ ଦେଲେ । ସେଥିରେ ଯେ ଉତ୍କଟ ବିଷ ଦିଆଯାଇଛି, ଏକଥା ତାଙ୍କୁ ଆଉ ଅଛପା ରହିଲା ନାହିଁ ।

ତାଙ୍କୁ ହତ୍ୟା କରିବାର ଏ ଯେ ରାଣୀଙ୍କର ହୀନ ଚକ୍ରାନ୍ତ, ଏ କଥା ସୁସ୍ପଷ୍ଟ । ସନ୍ଦେହ ବହିର୍ଭୂତ । ରାଜ୍ୟ, ରାଜ ଉଆସ, ରାଜ ଉଆସର ପ୍ରତିଟି ବ୍ୟକ୍ତି ସହିତ ରାଜା ରାଣୀ ତାଙ୍କୁ ବିଷ ପରି ଲାଗିଲା । ଉଆସକୁ ସେ ଆଉ ଫେରିଲେ ନାହିଁ । ସେଇ ମୁହୂର୍ତ୍ତରେ ଏବଂ ସେଇ ଜାଗାରୁ ସେ ବିଦେଶ ଯାତ୍ରାରେ ବାହାରିଲେ । ସାଥୀରେ ତାଙ୍କର ଅନୁଚର ବର୍ଗଙ୍କୁ ନେଇ-ଗଲେ ।

ତାଙ୍କ ରାଜ୍ୟ ମା ଗାମ୍ ପାଟ୍ଟୁ । ଏହା ଶ୍ରୀଲଙ୍କାର ଉତ୍ତରରେ । ସେ ସେଠୁ ବାହାର ବହୁ ରାଜ୍ୟ ବୁଲି ବୁଲି ଶେଷରେ ଦକ୍ଷିଣରେ ଥିବା ଓ୍ୱାଲୱାଜ ନଦୀ କୂଳରେ ପହଞ୍ଚିଲେ । ସେଠାକାର ଦୃଶ୍ୟ ଅତି ମନୋହର । ଚିତ୍ତାକର୍ଷକ । ରାଜକୁମାରଙ୍କ ମନକୁ ଏ ଜାଗାଟି ବେଶ ପାଇଲା । ସେଇଠି ସେ ତାଙ୍କ ସାଥୀରେ ଯାଇଥିବା ସମସ୍ତଙ୍କୁ ବସାଇ କହିଲେ – "ଏଇ ନଈଟି ଭାରି ସୁନ୍ଦର । ବର୍ଷସାରା ଏଠି ପ୍ରଚୁର ପାଣି । ପାଖରେ ବିସ୍ତୀର୍ଣ୍ଣ କୃଷିଯୋଗ୍ୟ ସମତଳ ଭୂମି । ଏହା ବସତି ଉପଯୋଗୀ । ବସତି ସ୍ଥାପନ କଲେ ଏଠି ଆମେ ସମୃଦ୍ଧ ହେବା । ଆମର ସମସ୍ତ କାର୍ଯ୍ୟ ମଙ୍ଗଳମୟ ହେବ ।"

ସାଥୀରେ ଥିବା ଲୋକମାନଙ୍କର ତାଙ୍କ ଉପରେ ଥିଲା ଅଗାଧ ବିଶ୍ୱାସ । ସେମାନେ ବିନା ଦ୍ୱିଧାରେ ତାଙ୍କ କଥା ଗ୍ରହଣ କରିନେଲେ । ସେଇଠି ବସତି ସ୍ଥାପନ ହେଲା । ସେମାନେ ଏହାକୁ ଏକ ନୂଆ ରାଜ୍ୟ ବୋଲି କହିଲେ । ରାଜକୁମାର ଏଇ ଶ୍ରେଷ୍ଠ ରାଜ୍ୟଟିର ରାଜା । ତାଙ୍କର ଅକ୍ଳାନ୍ତ ପରିଶ୍ରମ ଫଳରେ ଏଇ ଶ୍ରେଷ୍ଠ ବସତିଟି ଗୋଟିଏ ସମୃଦ୍ଧ ସହର ହୋଇଗଲା । ବ୍ୟବସାୟର କେନ୍ଦ୍ର ବି ହୋଇଗଲା । ବିଭିନ୍ନ ଅଞ୍ଚଳରୁ ଲୋକେ ଆସି ଏଠି ବସତି ସ୍ଥାପନ କଲେ । ଏଠି ସୁଖରେ ଲୋକଙ୍କୁ ରଖିବାକୁ ହେଲେ, ବାହାର ଆକ୍ରମଣକୁ ପ୍ରତିହତ କରିବାକୁ ହେବ । ତେଣୁ ସେଥିପାଇଁ ସୈନ୍ୟବାହିନୀର ଆବଶ୍ୟକତା ଅନୁଭବ କରାଗଲା । ରାଜକୁମାର ସୈନ୍ୟ ବାହିନୀଟିଏ ଗଢ଼ିଲେ । ଏହା ସୁଶୃଙ୍ଖଳିତ । ଦୁର୍ଦ୍ଧର୍ଷ । ଅଜେୟ । ଏହା ସାହାଯ୍ୟରେ ରାଜକୁମାର ତାଙ୍କ ଶ୍ରେଷ୍ଠ ରାଜ୍ୟଟିର କଳେବର ବେଶ୍ ବୃଦ୍ଧି କରି ଏହାକୁ ଗୋଟିଏ ବଡ଼ରାଜ୍ୟ

କରଦେଲେ । ରାଜକୁମାରଙ୍କ ଶକ୍ତି, ସାମର୍ଥ୍ୟ ଓ ସାହସର ଆଉ ଅଛପା ନାହିଁ । ପଡ଼ଶା ରାଜାମାନେ ଏ ବିଷୟରେ ସଚେତନ । ତେଣୁ ସେ ନିଜକୁ ନିରାପଦ ଭାବିଲେ ।

ରାଜ୍ୟରେ ତାଙ୍କର ଏବେ ସବୁଠି ଶାନ୍ତି ଶୃଙ୍ଖଳାର ବାତାବରଣ । ଲୋକମାନେ ଆନନ୍ଦରେ ଜୀବନ-ଯାପନ କରନ୍ତି । ବଦମାସୀ ଓ ଅପରାଧ ଏଠି ଯେପରି ସ୍ୱପ୍ନ । ରାଜକୁମାର ଏବେ ଆଶ୍ୱସ୍ତ । ଲୋକଙ୍କର ଆନନ୍ଦର ପରିସର ବୃଦ୍ଧି ପାଇଁ ସେ ଆଗ୍ରହୀ । ସେଥିପାଇଁ ନିଜର ତତ୍ତ୍ୱାବଧାନରେ ସେ ଉଦ୍ୟାନଟିଏ କଲେ । ବିଭିନ୍ନ ଦେଶରୁ ଓ ରାଜ୍ୟରୁ ବିଭିନ୍ନ ପ୍ରକାର ତରୁଲତା, ବୃକ୍ଷ ଆଣି ତାଙ୍କର ବଗିଚାରେ ଲଗାଇଲେ । ରାଜକୁମାର ତତ୍ତ୍ୱ ନେବାଯୋଗୁ ଅଳ୍ପଦିନରେ ବଗିଚାଟି ବେଶ୍ ସୁନ୍ଦର ହୋଇଗଲା । ଯେ ଦେଖିଲା, ସେ ପ୍ରଶଂସା ନ କରି ରହିପାରିଲା ନାହିଁ ।

ଉଦ୍ୟାନ ଜଗିବାକୁ ସେ ଦକ୍ଷ ରକ୍ଷକମାନଙ୍କୁ ନିଯୁକ୍ତି ଦେଲେ । ଉଦ୍ୟାନଟିର ପରିଚାଳନା କିଛିଦିନ ବେଶ୍ ସୁରୁଖୁରୁରେ ଚାଲିଲା । ତାପରେ ଆସିଲା ବିପତ୍ତି । ରାତିରେ କିଛି ବାର୍‌ହା ପଶି ଉଦ୍ୟାନର ବହୁ କ୍ଷତି କଲେ । ଉଦ୍ୟାନ ରକ୍ଷକମାନଙ୍କ ଅକ୍ଳାନ୍ତ ଚେଷ୍ଟା ସତ୍ତ୍ୱେ ବାର୍‌ହାଙ୍କ ଦାଉରୁ ଉଦ୍ୟାନ ରକ୍ଷା-କରିବା ଅସମ୍ଭବ ହୋଇ ଉଠିଲା । ରାଜା ଏ ଖବର ପାଇ ରକ୍ଷକମାନଙ୍କ ସଂଖ୍ୟା ବଢ଼ାଇ ଦେଲେ । ତଥାପି ଅବସ୍ଥାର କିଛି ଉନ୍ନତି ହେଲା ନାହିଁ । ବରଂ ଆଉରି ଗୋଟିଏ ସମସ୍ୟା ଆସି ପହଞ୍ଚିଲା ।

ରକ୍ଷକମାନେ ଦେଖିଲେ— ଯେଉଁ ବାର୍‌ହାମାନେ ଉଦ୍ୟାନ ନଷ୍ଟ କରିବାକୁ ଆସୁଛନ୍ତି, ତାଙ୍କର ପାଦଚିହ୍ନ ତ

ପଡ଼ିଛି । ତା’ ଭିତରେ ଗୋଟିଏ ମଣିଷର ପାଦଚିହ୍ନ ବି ଅଛି । ସେମାନେ ଯାହା ଦେଖିଲେ, ସେଇକଥା ସେ ରାଜାଙ୍କୁ ଜଣାଇଲେ ।

ରାଜା ଏସବୁ ଶୁଣିବା ପରେ ଗମ୍ଭୀର ଚିନ୍ତାକଲେ । ପ୍ରକୃତ କଥା ଜାଣିବା ପାଇଁ ତାଙ୍କର ଆଗ୍ରହ ବଢ଼ିଲା । ସେ ତାଙ୍କ ସୈନ୍ୟ ବାହିନୀଙ୍କୁ ଡାକି ଆଦେଶ ଦେଲେ—“ତୁମେମାନେ ଉଦ୍ୟାନକୁ ଯାଅ । ସେଠି ଉଦ୍ୟାନ ଉପରେ କଡ଼ା ନଜର ରଖ । ସେ ଉଦ୍ୟାନକୁ ବାର୍‌ହାମାନଙ୍କ ସାଥୀରେ କିଏ ଆସୁଛି ଦେଖ । ଯଦି ତାଙ୍କ ଭିତରେ କେହି ମଣିଷ ଥାଏ, ତାକୁ ଧରିଆଣ । ତାର ଜୀବନ ଉପରେ ଯେପରି ଆଘାତ ନ ଆସେ, ସେଥିପାଇଁ ଦୃଷ୍ଟି ଦେବ ।”

ଜହ୍ନରାତି । ରାଜାଙ୍କ ଆଦେଶ ପାଳନ କରି ସୈନ୍ୟମାନେ ବଗିଚା ଗଛ ଉପରେ ଲୁଚି ବସିଥାନ୍ତି । ଏତିକିବେଳେ ବାର୍‌ହା ଦଳ ମାଡ଼ି ଆସିଲେ । ସେମାନେ ଦେଖିଲେ—ବାର୍‌ହାମାନଙ୍କ ଭିତରେ ଗୋଟିଏ ମଣିଷ ପିଲା ଅଛି । ସେ ସମ୍ପୂର୍ଣ୍ଣ ଲଙ୍ଗଳା । ସେ ତାର ଦୁଇ ଗୋଡ଼ରେ ଚାଲୁ ନାହିଁ । ପଶୁଙ୍କ ପରି ହାତ ଗୋଡ଼କୁ ବ୍ୟବହାର କରି ଚାରିଗୋଡ଼ିଆ ହୋଇ ଚାଲୁଛି ।

ସୈନ୍ୟମାନେ ପିଲାଟିକୁ ଧରିବା ପାଇଁ ଉଦ୍ୟମ କଲେ । ଠିକ୍ ହିଂସ୍ରଜନ୍ତୁମାନେ ଯେପରି ଆକ୍ରମଣ କରନ୍ତି, ସେଇପରି ସେମାନଙ୍କୁ ଆକ୍ରମଣ କଲା । ସେମାନଙ୍କୁ କାମୁଡ଼ିଲା । ନଖରେ ସେମାନଙ୍କ ଦେହ ବିଦାରିଲା । ସୈନ୍ୟମାନେ ତ ତାକୁ ଧରିବା ପାଇଁ କେବଳ ନିର୍ଦ୍ଦେଶ ପାଇଥିଲେ । ପ୍ରଥମଥର ସେମାନେ ପ୍ରସ୍ତୁତ ନ ଥିଲେ । ତେଣୁ ତାକୁ ସେମାନେ ଧରି ପାରିଲେ ନାହିଁ । ସେ ପଳାଇଲା ।

ସୈନ୍ୟମାନେ ହିଂସ୍ରପଶୁଥର ପାଇଁ ପ୍ରସ୍ତୁତ ହୋଇଗଲେ । ବାର୍ହାମାନଙ୍କ ସହିତ ପିଲାଟି ଯେଉଁଠି ଉଦ୍ୟାନରେ ପଶିଛି, ସୈନ୍ୟମାନେ ତାକୁ ଘେରିଗଲେ । ଗୋଟିଏ ଜାଲ ତା ଉପରକୁ ପକାଇ ଦେଲେ । ଏଥର ସେ ଯିବ କୁଆଡ଼େ ? ଜାଲରେ ସେ ଛନ୍ଦି ହୋଇଗଲା । ନିଜକୁ ମୁକ୍ତ କରିବାକୁ ସେ ଖୁବ୍ ଉଦ୍ୟମ କଲା । ଜାଲକୁ ଦାନ୍ତରେ କାମୁଡ଼ି ଛିଣ୍ଡାଇବା ପାଇଁ ସେ ଅକ୍ଲାନ୍ତ ପରିଶ୍ରମ କଲା । ଖୁବ୍ ଚଢ଼ଆଗଡ଼ ହେଲା । ବାର୍ହା ଭଳି ଗର୍ଜନ କଲା । ନିଜେ କ୍ଷତବିକ୍ଷତ ହେବାଛଡ଼ା ଅଉ କିଛି ନ ହେବାରୁ ଶେଷକୁ ସେ ଶାନ୍ତ ପଡ଼ିଲା । ତାପରେ ସେଇ ଜାଲ ସହିତ ସୈନ୍ୟମାନେ ତାକୁ ଆଣି ରାଜାଙ୍କ ପାଖରେ ପହଞ୍ଚାଇ ଦେଲେ ।

ଯେତେବେଳେ ରାଜା ଦେଖିଲେ ଯେ ମଣିଷ ପିଲାଟିଏ ପଶୁ ହୋଇଯାଇଛି । ମଣିଷର ଢଙ୍ଗଢାଙ୍ଗ ତା'ଠାରେ କିଛି ନାହିଁ । ବରଂ ସେ ପଶୁପରି ଚଳୁଛି । ପଶୁର ସବୁ ଗୁଣ ତା'ଠାରେ ପୂରି ରହିଛି । ତାକୁ ମଣିଷ କରିବାକୁ ରାଜା ଚିନ୍ତା-କଲେ ।

ରାଜାଙ୍କ ନିର୍ଦ୍ଦେଶରେ ରାଜବୈଦ୍ୟ ଆସିଲେ ।

ରାଜା କହିଲେ—"ଏଇ ମଣିଷ-ପଶୁକୁ ନେଇ ପରୀକ୍ଷା କରନ୍ତୁ । ଏହାକୁ ପ୍ରକୃତରେ କି'ଣ ମଣିଷ କରି ହେବ, ମୋତେ ତାହା ଜଣାନ୍ତୁ ।"

ରାଜବୈଦ୍ୟ ପିଲାଟିକୁ ଗୋଟିଏ ଯନ୍ତାରେ ତାଙ୍କ ଘରକୁ ନେଇଗଲେ । ବହୁ ପରୀକ୍ଷା ନିରୀକ୍ଷା ପରେ ସେ ମତ ଦେଲେ— "ଏ ଏକ ମଣିଷ ପିଲା । ବାର୍ହାମାନଙ୍କ ଦ୍ୱାରା ପାଳିତ । ସେ ଆଗରୁ ମଣିଷଟିଏ ବି ଦେଖି ନାହିଁ କି ମଣିଷ ପ୍ରଭାବ

ଛାଠାରେ ପଡ଼ ନାହିଁ । ତେଣୁ ବାର୍ହାଙ୍କର ସବୁ ଢଙ୍ଗ ଛାଠାରେ ବିଦ୍ୟମାନ । ଉଦ୍ୟମ ହେଲେ, ସେ ମଣିଷ ହୋଇ-ଯିବ । ଏଥିରେ ସନ୍ଦେହ ନାହିଁ ।”

ରାଜବୈଦ୍ୟଙ୍କୁ ରାଜା କହିଲେ—“ଆପଣ ଯାହା କହୁଛନ୍ତି ତାହା ଯଦି ସମ୍ଭବ ପର । ଉଦ୍ୟମ ଅବ୍ୟାହତ ରହୁ । ପିଲାଟିକୁ ମଣିଷ କରାଯାଉ ।”

ସେଇଦିନୁ ରାଜବୈଦ୍ୟ ପିଲାଟିର ଚିକିତ୍ସା ଆରମ୍ଭ କଲେ । ବହୁ ବର୍ଷ ନେଲା । ଶେଷକୁ ସେଇ ପିଲାଟି ସମ୍ପୂର୍ଣ୍ଣ ମଣିଷ ହୋଇଗଲା । ଏବେ ତାର କଥାବାର୍ତ୍ତାରେ କି ବ୍ୟବହାରରେ ଅସ୍ୱାଭାବିକତା କିଛି ନ ଥିଲା । ସେ ଯେ ବାର୍ହା-ମାନଙ୍କ ଭିତରେ ବଢ଼ିଛି ଓ ବାର୍ହାମାନଙ୍କ ଭଳି ବ୍ୟବହାର କରୁଥିଲା, ତାର ଛୁଟ୍ ଟିକିଏ ହେଲେ ତାର ଆଗର ବ୍ୟବହାରରେ ନ ଥିଲା ।

ଏକଥା ଦେଖି କେବଳ ରାଜା ନୁହନ୍ତି, ରାଜ୍ୟର ସବୁ ଲୋକ ଖୁସି । ଏହା ଯେ ରାଜାଙ୍କ ଉଦ୍ୟମ ଯୋଗୁ ସମ୍ଭବ ହେଲା । ସେଥିପାଇଁ ସମସ୍ତଙ୍କ ମୁହଁରେ ରାଜାଙ୍କର ପ୍ରଶଂସା ।

ଯୁବକଟି ଏବେ ରାଜାଙ୍କର ବିଶ୍ୱସ୍ତ । ସେ ପ୍ରତିଦିନ ରାଜ ଦରବାରରେ ଉପସ୍ଥିତ ରୁହେ ।

ଦିନେ ରାଜା ଯୁବକଟିକୁ ପଚାରିଲେ—ତୁମେ ବହୁଦିନ ବାର୍ହାମାନଙ୍କ ଭିତରେ ଥିଲ । ଜଙ୍ଗଲର ଅଢ଼ କନ୍ଦ ସବୁ ବୁଲିଲ । ସବୁଠାରୁ ତମକୁ କେଉଁ ଜାଗା ଭଲ ଲାଗୁଥିଲା । ସେ କଥା ମୋ ଆଗେ କହିପାରିବ କି ?”

"ହଁ ମହାରାଜ, ଗୋଟିଏ ଜାଗା ଅଛି । ଯାହା ପଙ୍କ ଘର ଅଣ୍ଡା । ସବୁବେଳେ ସେଠି ପଡ଼ି ରହିବାକୁ ଆମକୁ ଘର ଭଲ ଲାଗୁଥିଲା ।" ଯୁବକଟି କହିଲା ।

"ତୁମେ ମୋତେ ସେ ଜାଗାକୁ ନେଇଯାଇ ପାରିବ ?"

"ଆପଣ ଚାହିଁଲେ·········ମହାରାଜ ।"

ରାଜା ସମ୍ମତି ଜଣାଇଲେ । ପରଦିନ ଯୁବକଟି ରାଜାଙ୍କୁ ସେଇ ସନ୍ତସନ୍ତିଆ ଜାଗାକୁ ନେଇଗଲା । ରାଜା ଦେଖିଲେ, ଜାଗାଟି ଯଦିଓ ସନ୍ତସନ୍ତିଆ ତାର ଚାରିପଟେ ପ୍ରାକୃତିକ ସୌନ୍ଦର୍ଯ୍ୟ ଭରି ରହିଛି । ସେସବୁ ଦେଖି ରାଜା ମଧ୍ୟ ଆତ୍ମହରା ହୋଇ ଉଠିଲେ । ତାପରେ ସେ ତାଙ୍କର ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ —"ଏଇ ସନ୍ତସନ୍ତିଆ ଜାଗା ଚାରିପଟେ ଗୋଟିଏ ସୁଦୃଢ଼ ବନ୍ଧ ବାନ୍ଧ । ଏହାକୁ ଏକ ଜଳାଶ୍ରୟ କର ।"

ତାହା ହିଁ ହେଲା । ରାଜା ଯୁବକଟିକୁ ଏଇ ଜଳାଶ୍ରୟର ଦାୟିତ୍ୱ ଦେଲେ ।

ଯୁବକଟି ଭାରି ପରିଶ୍ରମୀ । ଅକଳନ ତାର ବୁଦ୍ଧି । ସେ ପୁଷ୍କରିଣୀର ପାଣିକୁ ଜଳ ସେଚନ କାର୍ଯ୍ୟରେ ନିୟୋଜିତ କରେ । ତାର ଆଖି ପାଇବା ପର୍ଯ୍ୟନ୍ତ ଜମିରେ ସେ ଧାନ ଚଷେ । ରାଜ ଭାଗ ଅଧେ ରାଜାଙ୍କୁ ଦେଇ ଆଉ ଅଧିକ ସେ ନିଏ । ଏଥିରେ ତାର ବିପୁଳ ଲାଭହେଲା । ଫଳରେ ଅଳ୍ପଦିନ ଭିତରେ ଯୁବକଟି ଜଣେ ଧନୀ ଲୋକ ହୋଇଗଲା ।

ଲୋକେ ତାକୁ ଉରୁ ସିଂଚୋନା ( ବାରିହା ଭିତରେ ଧନୀ ଲୋକ ) ଓ ପୁଷ୍କରିଣୀକୁ ଉରୁ ସିଂଚୋନାର ପୁଷ୍କରିଣୀ କହିଲେ ।

ଏବେ ସେ ବହୁ ସମ୍ପତ୍ତିର ମାଲିକ । ଧନୀ ହିସାବରେ ରାଜ୍ୟରେ ସୁପରିଚିତ । ଫଳରେ ଲୋକଙ୍କର ଆଉ ତା ପ୍ରତି

ଶ୍ରଦ୍ଧା ନାହିଁ । ବରଂ ସେ ଏବେ ଈର୍ଷାର ପାତ୍ର । ତାର ଉପର କ୍ଷତି କରାଯିବ, ସେଥିପାଇଁ ହିଂସୁକ ଲୋକମାନେ ଚିନ୍ତିତ । ସେ ଯେ ଭଦ୍ର, ଦୟାଳୁ, ସ୍ନେହୀ, ପରୋପକାରୀ, ସତ୍ତ୍ୱନିଷ୍ଠ, ବନ୍ଧୁବତ୍ସଳ, ଏହି କଥା ସବୁ କେହି ବିଚାରକୁ ନେଲେ ନାହିଁ । ତାକୁ ତଳାତଳାନ୍ତ କରିବାକୁ ସେମାନେ ଦୃଢ଼ । ଆଗ୍ରହୀ ।

ପୁଷ୍କରିଣୀ ଯୋଗୁ ଉରୁ ସିତାନୋ ଆଜି ପ୍ରତିଷ୍ଠିତ ବ୍ୟକ୍ତି । ତେଣୁ ପୁଷ୍କରିଣୀକୁ ଧ୍ୱଂସ କରିଦେଲେ, ଉରୁ ସିତାନୋର ଧ୍ୱଂସ ଅନିବାର୍ଯ୍ୟ । ଏହା ହିଁ ସେମାନଙ୍କର ସିଦ୍ଧାନ୍ତ ଥିଲା ।

ଖାଲି ବର୍ଷର ବର୍ଷାରେ କଥାଟା ସୀମାବଦ୍ଧ ନ ରହି କାର୍ଯ୍ୟକାରୀ କରିବାକୁ ଚିନ୍ତା କରାଗଲା । ଖଳଲୋକର ଅଭାବ ନାହିଁ । ସେମାନେ ଏଇ କାମରେ ଆନନ୍ଦ ପାଆନ୍ତି ।

ଦିନେ ରାତିରେ ଭୟଙ୍କର ଗର୍ଜନ ଶୁଣି ଉରୁ ସିତାନୋର ନିଦ ଭାଙ୍ଗିଗଲା । ସେ ତାର ଲୋକମାନଙ୍କୁ ନେଇ ପୁଷ୍କରିଣୀ ପାଖକୁ ଧାଇଁଲା । ସେଠି ସେ ଯାହା ଦେଖିଲା; ତାର ଆଖି ଖୋସି ହୋଇଗଲା । ସେ ସହି ପାରିଲା ନାହିଁ ।

ସେ ଦେଖିଲା—"ପୁଷ୍କରିଣୀର ବନ୍ଧ ଭାଙ୍ଗି ଯାଇଛି । ଅସମ୍ଭବ ଜୋରରେ ଘାଇରେ ପାଣି ବୋହି ଯାଉଛି । ବନ୍ଧ ନ ନ ବନ୍ଧାଇଲେ, ପୁଷ୍କରିଣୀ ଶୁଖିଯିବ । ଜଳସେଚନର ସୁବିଧା ବୁଲିଯିବ । ଫଳରେ ଧାନ ଗଛ ସବୁ ମରିଯିବ ।"

ସେ ତାର ଲୋକଙ୍କୁ ବନ୍ଧ ବନ୍ଧାଇବାକୁ ଆଦେଶ ଦେଲା । ସେମାନେ ଅକ୍ଳାନ୍ତ ପରିଶ୍ରମ କଲେ । ମାଟି ଡାଳ ପତ୍ର ଗଛ ଯାହା ପାଇଲେ ଘାଇରେ ପକାଇଲେ ସବୁ ଭାସିଗଲା । କୌଣସି

ପ୍ରକାର ଚେଷ୍ଟାରେ ଯେ ବନ୍ଧ ବନ୍ଧାଇ ହେବ, ଏକଥା ଅସମ୍ଭବ ଲାଗିଲା ।

ଏ ଦୃଶ୍ୟ ଉତ୍ତୁ ସିଂହାସନ ପ୍ରତି ଅତ୍ୟନ୍ତ ଅସହ୍ୟ । ବରଦାସ୍ତ କରିବା ତା ପକ୍ଷେ ଅସମ୍ଭବ । ଉତ୍ତୁ ସିଂହାସନ ଭାବିଲା—ଦେବତାଙ୍କ ଦୟାରୁ ସେ ବାଉଁଶରୁ ମଣିଷ ହେଲା, ପୁଣି ତାଙ୍କ ଦୟାରୁ ଏ ମୁଲକର ସବୁଠୁ ଧନୀ ସମ୍ଭ୍ରାନ୍ତ ବ୍ୟକ୍ତି ହୋଇ ଉଠିଲା । ଆଜି ଦେବତା ପରାଙ୍ମୁଖ । ତା'ର ଜୀବନ ସାଥିରେ ଓତଃପ୍ରୋତଃ ଭାବରେ ଜଡ଼ିତ ବନ୍ଧଟିକୁ ଭାଙ୍ଗିଦେଲେ । ତା'ର ସୁଖର ସଂସାର ଚୂରମାର କରି ଭାଙ୍ଗିଦେଲେ । ଏ ଦେବତାର ରାଗକୁ ଶାନ୍ତ କରିବାକୁ ହେବ । ସେଥିପାଇଁ ଆତ୍ମବଳି ଦରକାର । ସେ ଆଉ ମୁହୂର୍ତ୍ତଟିଏ ଅପେକ୍ଷା କଲା ନାହିଁ । ସିଧା ଘାଇ ମୁହଁକୁ ଡେଇଁ ପଡ଼ିଲା । ସୁଅ ମୁହଁରେ କୁଆଡ଼େ ଭାସିଗଲା କେହି ଜାଣିପାରିଲେ ନାହିଁ ।

ଏବେ ବି ଉତ୍ତୁ ସିଂହାସନ ପୁଷ୍କରଣୀ ପରିତ୍ୟକ୍ତ ଅବସ୍ଥାରେ ଅଛି । ସେଠାରେ କ୍ୱାଟର ମାଇଲ ଲମ୍ବର ପଥରଟିଏ ପଡ଼ିଛି । ଏହା ଏକ ଚକ୍‌କଣ ସୁନ୍ଦର ପଥର । ଲୋକେ ଏଇ ପଥରକୁ ଉତ୍ତୁ ସିଂହାସନ ବୋଲି କହନ୍ତି ।



# ବେଲ୍ଡଆ ଜାତିର ସୃଷ୍ଟି

ବହୁବର୍ଷ ତଳେ ଶ୍ରୀଲଙ୍କାରୁ ହଠାତ୍ ଯୁବକମାନେ ଉଭେଇ ଯିବାକୁ ଲଗିଲେ । ସକାଳେ ଭେଣ୍ଡା ପୁଅ ଥିଲା । ସନ୍ଧ୍ୟା-ବେଳକୁ ତାର ପତ୍ତା ନାହିଁ । ବନ୍ଧୁ ବାନ୍ଧବ ସମସ୍ତେ ବ୍ୟସ୍ତ । ଖୋଜାଖୋଜି ଚାଲିଲା । ନାଁ'ଗନ୍ଧ ତାର ମିଳିଲା ନାହିଁ । ଜଣେ ନୁହଁ । ଶହ ଶହ ଯୁବକ ନଖୋଜ ହୋଇଗଲେ । କିନ୍ତୁ କୌଣସି ଖବର ଅନ୍ତର ସେମାନଙ୍କର ମିଳିଲା ନାହିଁ । ବାପମା, ଭାଇ, ବନ୍ଧୁ ମୁଣ୍ଡରେ ହାତ ଦେଇ ବସିଲେ । ସମସ୍ତେ ଉପାୟହୀନ । ଅନେକ ଭାବିଲେ, କଥାଟା ରାଜାଙ୍କ କାନକୁ ନେବେ । କିପରି କଥାଟା ରାଜାଙ୍କ ଆଗରେ ଉପସ୍ଥାପିତ କରାଯିବ, ସେ ଏକ ସମସ୍ୟା ।

ସେଦିନ ରାଜାଙ୍କ ବାରିକ ପୁଅର ପତ୍ତା ମିଳିଲା ନାହିଁ । ସେ ହେଉଛି ବାରିକର ଏକମାତ୍ର ପୁଅ । ବାରିକ ତାକୁ ଖୁବ୍ ଖୋଜିଲା । କେଉଁଠି ସନ୍ଧାନ ନ ପାଇବାରୁ ହାଉଳି ଖାଇଲା । ଲୋକେ ତା' ଘରପଟେ ଘେରିଲେ । ଅନେକ ଭାବିଲେ—ଏଇଟା ଗୋଟାଏ ମଉକା । ଏହାକୁ ସଦୁପଯୋଗ କଲେ, ରାଜାଙ୍କ କାନରେ କଥାଟା ପଡ଼ିବ । କୌଣସି ନା କୌଣସି ବ୍ୟବସ୍ଥା ହେବ ।

ବାରିକର ଘରପଟେ ଘେରିଥିବା ଲୋକେ ତାକୁ କହିଲେ—ଏମିତି କାନ୍ଦିଲେ, ପୁଅ କ'ଣ ତୋର ଫେରିବ ? ଯା, ରାଜାଙ୍କୁ କହ । ସେ ବ୍ୟବସ୍ଥା କରିବେ । ପୁଅ ନିଶ୍ଚୟ ଫେରି ଆସିବ ।

ବାଉକ ମନକୁ କଥାଟା ବେଶ୍ ପାଇଲା । ସେ ହେଳା କଲା ନାହିଁ । ରାଜାଙ୍କ ପାଖକୁ ଧାଇଁଲା ।

ଉଆସରେ ପହଞ୍ଚିଲା ବେଳକୁ ଦ୍ୱିପ୍ରହର । ସେତେବେଳକୁ ରାଜା ମଣୋହିକୁ ବିଜେ କରିଥାଆନ୍ତି । ତେଣୁ ରାଜାଙ୍କ ସାକ୍ଷାତ ମିଳିବା ଅସମ୍ଭବ । ବାଧ୍ୟହୋଇ ବାଉକଟି ରାଜାଙ୍କର ରନ୍ଧନଶାଳା ପାଖରେ ଅପେକ୍ଷା କଲା । କିନ୍ତୁ ସେ ବିକଳ ହୋଇ କାନ୍ଦୁଥାଏ ।

ବାଉକ ତ ନୂଆ ଲୋକ ନୁହଁ । ତାକୁ ରାଜ ପ୍ରାସାଦରେ ସମସ୍ତେ ଜାଣନ୍ତି । ବାଉକ କାହିଁକି କାନ୍ଦୁଛି, ଜାଣିବାକୁ ସମସ୍ତେ ବ୍ୟଗ୍ର, ଉତ୍କଣ୍ଠିତ । କାରଣ ତାକୁ ପଚାରିଲେ । ସେ କାନ୍ଦି କାନ୍ଦି ତାର ଦୁଃଖ ବର୍ଣ୍ଣନା କଲା । ତାର ଦୁଃଖ ଶୁଣି ଅନେକ ମନ କଷ୍ଟକଲେ । କେତେକ ସମବେଦନାରେ କାନ୍ଦି ପକାଇଲେ ।

ଖାଇବାବେଳେ ବାଉକଟି ରନ୍ଧନଶାଳାରେ ପହଞ୍ଚିଛି । ରାଜାଘରେ ନିୟମ—ଏ ସମୟରେ ଯେ ଏଠି ଆସି ପହଞ୍ଚିବ, ତାକୁ ଖାଇବାକୁ ଦିଆହେବ । ସେଥିପାଇଁ ବାଉକକୁ ଖାଇବାକୁ ଦିଆଗଲା ।

ବାଉକଟି ଖାଇବା ପାଖରେ ବସି କାନ୍ଦିଲା । ପୂଝାରି ବହୁ ବାଧ୍ୟ କରିବାରୁ ସେ ଖାଇବାକୁ ତରକାରିରେ ହାତ ପୂରାଇଲା । ହଠାତ୍ ତାର ଆଖି ବିସ୍ଫାରିତ ହୋଇଗଲା । ଖାଇବା ଜାଗା ପାଖରୁ ଉଠି ଡେଇଁପଡ଼ିଲା । ଟିକିଏ ଦୂରରେ ଠିଆହେଲା । ଭୟରେ ଗୋଟାସୁଦ୍ଧା ସେ ଥରୁଥାଏ । ପାଟିରୁ ତାର ବାହାରି ପଡ଼ିଲା—"ଆଲୋ ମା···"

"କ'ଣ ହେଲା ?" ପୂଝାରିଟି ପଚାରିଲା ।

ବାଳକଟି ହାତ ବଢ଼ାଇ ତା'ର ଖାଇବା ଜିନଷକୁ ଦେଖାଇ କହିଲା—"ଏଇ...ସେଇ...ଏଇ ସେଇ"...

ପୂଝାରୀଟି କଛି ବୁଝି ନ ପାରି କଥା କ'ଣ ଜାଣିବାକୁ ବାଳକକୁ ପୁଣି ପଚାରିଲା ।

ଏହା ଭିତରେ ବାଳକଟି ପ୍ରକୃତିସ୍ଥ ହେଲାଣି । ସେ ତା'ର ଖାଦ୍ୟ ପାଖକୁ ଆସିଲା । ମାଂସ ତରକାରି ଭିତରୁ ଗୋଟିଏ ବଙ୍କା ଆଙ୍ଗୁଠି ଉଠାଇ ଆଣି କହିଲା-"ଏ ମୋ ପୁଅର ଆଙ୍ଗୁଠି । ପିଲାଟି ଦିନରୁ ତାର ଆଙ୍ଗୁଠି ଏଇପରି ବଙ୍କା । ଏହା ଯେ ମୋ ପୁଅର ଏଥିରେ ସନ୍ଦେହ ନାହିଁ । ହେ ଭଗବାନ ! ଏହା କିପରି ହେଲା ?" ତାପରେ ସେ ତାର ହାତ ମୁଣ୍ଡରେ ବାଡେଇ ଦେଲା ।

ରନ୍ଧନ ଶାଳାର ସବୁ କର୍ମଚାରୀ ସେଠାରେ ରୁଣ୍ଡ ହୋଇଗଲେଣି । ପଶୁମାନଙ୍କୁ ମାରି ସେମାନଙ୍କର ମାଂସ ତରକାରି ହୁଏ, ସେଥିରେ ମଣିଷର ଆଙ୍ଗୁଠି ପରି କିଛି ହାଡ଼ ରହିବାର ପ୍ରଶ୍ନ ଉଠୁ ନାହିଁ । ସମସ୍ତେ ଆଲୋଚନା କଲେ । ତା' ଭିତରକୁ ଆଙ୍ଗୁଠିଟି ଅସିଲା କେମିତି ? ସମସ୍ତେ ବିସ୍ମିତ ହେଲେ ।

ବାଳକଟି ସେଇ ଆଙ୍ଗୁଠିଟି ଧରି ପାଗଳ ଭଳି ନାଚିଲା । ମଝିରେ ମଝିରେ ଚିତ୍କାର କରୁଥାଏ । ସେଇ ଅବସ୍ଥାରେ ସେ ରାଜାଙ୍କ ପାଖକୁ ଧାଇଁଲା । କାହାରି ମନା ସେ ମାନିଲା ନାହିଁ ।

ରାଜା ଖାଇସାରି ବିଶ୍ରାମ ନେଉଥିଲେ । ଝିଡ଼ଭଳି ବାଳକ ତାଙ୍କ ପାଖରେ ହାଜର ହୋଇଗଲା ।

ଏପରି ଅବସ୍ଥାରେ ନିଜ ବାଳିକକୁ ଦେଖି ରାଜା ଆଶ୍ଚର୍ଯ୍ୟ । ରାଜା ପଚାରିଲେ—"ତୋର କ'ଣ ହୋଇଛି ଯେ ତୁ ଏମିତି ହେଉଛୁ ।"

"ଶୁମ୍ଭୁ, ମଣିଷ ମାଂସ ଖାଉଛନ୍ତି । ମୋ ପୁଅର ମାଂସ ମଣିମାଙ୍କର ମଣୋହିରେ ପରଷା ହୋଇଛି ।" ବାରିକଟି କହିଁ କହିଁ ହୋଇ କାନ୍ଦୁ କାନ୍ଦୁ କହିଲା ।

ଏକଥା ଶୁଣି ରାଜା ନଅାଁ । ଅଖି ତାଙ୍କର ଜଳ ଉଠିଲା । ସେ ଶୋଇବାବସ୍ଥାରୁ ଉଠି ବସି ପଡ଼ିଲେ । ବାରିକର ଆସ୍ପର୍ଦ୍ଧା ଦେଖି ସେ କ୍ଷୁବ୍ଧ । ତେଣୁ ସେ ଗର୍ଜି ଉଠିଲେ—"ଚୋର ଅଭିଯୋଗ ଉପୁଜର । ପ୍ରମାଣ ସାପେକ୍ଷ । ମିଥ୍ୟା ବୋଲି ପ୍ରମାଣିତ ହେଲେ ଚୋର ଶିରଚ୍ଛେଦ ହେବ ।"

ବାରିକଟି କରୁଣ ସ୍ୱରରେ ଭେ ଭେ ହୋଇ କାନ୍ଦି ଉଠିଲା । ସେ ତାର ପୁଅର ବଙ୍କା ଆଙ୍ଗୁଠି ଦୁଇଟି ରାଜାଙ୍କୁ ଦେଖାଇ କହିଲା- "ମଣିମା, ଶୁମ୍ଭୁଙ୍କ ରନ୍ଧନ ଶାଳାରୁ ମୋତେ ଯେଉଁ ମାଂସ ତରକାରି ଦିଆଗଲା, ସେଥିରେ ମୋ ପୁଅର··· ମୋ ପୁଅର···ମୋ ପୁଅର··· ।" ତାପରେ ତାର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ଆଖିରୁ ବୋହି ଆସିଲା ଅଜସ୍ର ଲୋତକ ଧାର । ସେ କିଛି ଆଉ କହି ପାରିଲା ନାହିଁ । ତାର କାରୁଣ୍ୟତା ରାଜାଙ୍କ ମନରେ ଗଭୀର ପ୍ରଭାବ ପକାଇଲା । ବାରିକଟି ଯେ ସତ୍ୟ କହୁଛି, ଏହାହିଁ ରାଜାଙ୍କର ଧାରଣା ହେଲା ।

ରାଜା ରନ୍ଧନ ଶାଳାର ପୂଝାରୀକୁ ଡକାଇଲେ । ବାରିକର ଅଭିଯୋଗ ବିଷୟରେ ଜାଣିବାକୁ ଚାହିଁଲେ । ପୂଝାରୀ ଡର ଡରି କହିଲା—"ମହାରାଜ, ବାରିକ ଧରିଥିବା ଆଙ୍ଗୁଠି ମାଂସ ତରକାରିରେ ଥିଲା । ଆଜ ଆସିଥିବା ମାଂସରେ ଏଇଟି ମିଶିଥିଲା ।"

ରାଜା ଏକଥା ଶୁଣି ବ୍ୟସ୍ତ ହୋଇ ଉଠିଲେ । ପାଖରେ ଥିବା କର୍ମଚାରୀମାନେ ଏ ଅବସ୍ଥାର ସୁଯୋଗ ନେଇ କହିଲେ—

"ମହିମା, ରାଜ୍ୟରେ ଏକ ସଙ୍କଟ ପଡ଼ିଛି । ସକାଳେ ଯେଉଁ ଯୁବକକୁ ଦେଖିବାକୁ ମିଳେ ସନ୍ଧ୍ୟାରେ ତାର ପତ୍ତା ମିଳେ ନାହିଁ । ଏହା ଏକ ନିତ୍ୟ ନୈମିତ୍ତିକ ଘଟଣା । କ'ଣ ହେଉଛି, କେହି ଜାଣିପାରୁ ନାହାନ୍ତି । ଗ୍ରାମୁଙ୍କ କାନରେ କଥାଟା ପକାଇବା ପାଇଁ ଉଦ୍ୟମ ହୋଇଛି । କିନ୍ତୁ କଥାଟା ଗ୍ରାମୁଙ୍କ ପାଖରେ ଉପସ୍ଥାପିତ ହୋଇ ପାରି ନ ଥିଲା ।"

ରାଜା ଗମ୍ଭୀର ହୋଇ ଉଠିଲେ । ସମସ୍ତଙ୍କୁ ଅଭୟ ଦେଇ କହିଲେ—"ଏହା ଏକ ଗୁରୁତର ଅଭିଯୋଗ । ଏହାର ପୁଙ୍ଖାନୁପୁଙ୍ଖ ତଦନ୍ତ ଆବଶ୍ୟକ । ଏଇ ଦାୟିତ୍ୱ ମୁଁ କାହାକୁ ନ ଦେଇ ନିଜେ ଆଜ ସର୍ବ ସାଧାରଣଙ୍କର ସମ୍ମୁଖରେ ତଦନ୍ତ କରିବି ।"

ରାଜାଦେଶ ଢେଙ୍କୁରା ମାଧ୍ୟମରେ ପ୍ରଚାର କରାଗଲା । ଲୋକେ ତ ଘଟଣା ଜାଣିବାକୁ ଆଗ୍ରହୀ । ଯେଉଁମାନେ ଏଥିରେ ସଂପୃକ୍ତ ସେମାନଙ୍କ କଥା ତ ଗ୍ଲାଡ଼ ! ଅଳ୍ପ ସମୟ ଭିତରେ ରାଜ ଦରବାରରେ-ଲୋକାରଣ୍ୟ ହୋଇଗଲା ।

ତଦନ୍ତରୁ ଜଣାପଡ଼ିଲା ଯେ ଧାଙ୍ଗା ଭେଦାମାନେ ଗୋଟିଏ ଶିକାରୀ ଜାତିର ଲୋକ । ମୃଗ ମାରି ରାଜାଙ୍କ ରନ୍ଧନ ଶାଳାକୁ ମାଂସ ଯୋଗାଇବାର ଦାୟିତ୍ୱ ସେମାନଙ୍କର । ସେମାନେ ଯୋଗାଇଥିବା ମାଂସ ଭିତରେ ସେଦିନ ବାଳକ ପୁଅର ଆଙ୍ଗୁଠି ଥିଲା ।

ଶିକାରୀ ଭେଦାମାନଙ୍କୁ ତଲବ କରାଗଲା । ସେମାନେ ଆସି ସେମାନେ ଦେଇଥିବା ମାଂସ ଭିତରେ ବାଳକ ପୁଅର ଆଙ୍ଗୁଠି ଥିବାକଥା ସ୍ୱୀକାର କଲେ ।

"ମଣିଷର ମାଂସ ମୃଗ ମାଂସ ଭିତରେ କପରି ମିଶିଲା ?" ଏହା ରାଜା ପଚାରିଲେ ।

ସେମାନେ କହିଲେ—"ମହାରାଜ, ମୁଣ୍ଡ ରହିଲେ, ତୁଣ୍ଡ ଖୋଲିବୁ । ନଇଲେ ଆପଣ ଯାହା ଦଣ୍ଡଦେଲେ ବି ସତକଥା ପ୍ରକାଶ କରିବୁ ନାହିଁ ।"

ରାଜା ଅଭୟ ଦେଲେ । ତେଣୁ ଭେଦାମାନେ କହିଲେ—"ଦିନେ ଜଙ୍ଗଲଯାକ ବୁଲି ବୁଲି ଶିକାର ଟିଏ ପାଇଲୁ ନାହିଁ । ମାଂସ ଉଆସର ରନ୍ଧନଶାଳାକୁ ନ ଯୋଗାଇଲେ, ଶିରଚ୍ଛେଦ ହେବାର ଆଦେଶ ଅଛି । ଆମେ ସମସ୍ତେ ଥରି ଉଠିଲୁ । କ'ଣ କରିବୁ ଜାଣି ପାରିଲୁ ନାହିଁ । ଏଇପରି ମାନସିକ ଯନ୍ତ୍ରଣାରେ ସଢ଼ୁଥିବା ବେଳେ ଆମେ ଦେଖିଲୁ, ଯୁବକଟିଏ ଜଙ୍ଗଲରେ ଯାଉଛି । ସେ ସମ୍ପୂର୍ଣ୍ଣ ଏକାକୀ । ଆଖପାଖରେ କେହି ନ ଥିଲେ । ଆମେ ତାକୁ ହତ୍ୟାକଲୁ । ତାର ମାଂସ ରନ୍ଧନଶାଳାକୁ ପଠାଇ ଦେଲୁ । ମଣିଷ ମାଂସ ସିନା ରନ୍ଧନ ଶାଳାକୁ ପଠାଇ ଦେଲୁ କିନ୍ତୁ ଆମେ ମହା ବିପଦରେ ପଡ଼ିଲୁ । ଗୁରୁମୁଙ୍କ ଦ୍ୱାରା ଏହା କପରି ଆଦୃତ ହେବ ଏବଂ ଗୁରୁମୁ ଏଥିପାଇଁ କ'ଣ କରିବେ, ଆମକୁ ସେ ଚିନ୍ତା ଘାରିଲା । ଆମେ ଭୟରେ ଥରି ଉଠିଲୁ । ଖାଦ୍ୟ ଆମକୁ ରୁଚିଲା ନାହିଁ । ରାତି ଖାଡ଼ା ଖାଡ଼ା ପାଇଗଲା । ଆଖିକୁ ଆମର ନିଦ ଆସିଲା ନାହିଁ । ପରଦିନ ସକାଳେ ଆମେ ନିତ୍ୟକର୍ମ ସାରିଲା ବେଳକୁ ଗୁରୁମୁଙ୍କର ରନ୍ଧନଶାଳାରୁ ଡାକରା ଆସିଲା । ଆମେ ଗଲୁ । ରନ୍ଧନ ଶାଳା ଦାୟିତ୍ୱରେ ଥିବା କର୍ମଚାରୀ ଆମକୁ କହିଲେ—ଗଲା କାଲିର ମାଂସ ଅତି ଉତ୍କୃଷ୍ଟ । ଏଥର ପ୍ରତିଦିନ ସେଇ ମାଂସ ଦେବାକୁ ହେବ । ଏକଥା ଶୁଣି ଆମେ ଗୁରୁଆ ହୋଇଗଲୁ । ପ୍ରତିଦିନ ଯୁବକଟିଏ କପରି ପାଇବୁ ସେ ଚିନ୍ତା

ଆମକୁ ଧାଉଁଲ । ଆମେ ସେଠା ଛାଡ଼ି ଆସିଲୁ ନାହିଁ । ଆମର ଆପତ୍ତି ଅଛି ବୋଲି ରାଜକର୍ମଚାରୀଙ୍କୁ କହିଲୁ । ସେ କହିଲେ— "ରାଜଜେମା ରତ୍ନବାଳା ରନ୍ଧନ ଶାଳା ଦାୟିତ୍ୱରେ । ଯଦି ଆମର କିଛି ଆପତ୍ତି ଥାଏ, ଆମେ ରାଜଜେମାଙ୍କୁ କହିପାରୁ ।" ଆମେ ରାଜଜେମା ରତ୍ନବାଳାଙ୍କ ଦର୍ଶନ ଚାହିଁଲୁ । ଦେଖାହେଲା । ରାଜଜେମା ପୂର୍ବଦିନ ଦେଇଥିବା ମାଂସର ତାରିଫ କଲେ । ତାପରେ ସେଇ ମାଂସ ପ୍ରତିଦିନ ଦେବାକୁ ଆଦେଶ ଦେଲେ । ଆମେ ହାତଯୋଡ଼ି କହିଲୁ—"ଆମକୁ କ୍ଷମା କରନ୍ତୁ । ପୂର୍ବଦିନ ଯୋଗାଇଥିବା ମାଂସ ଆଉ ମିଳିବା ସମ୍ଭବପର ନୁହେଁ ।"

ରାଜଜେମା ରତ୍ନବାଳା ରାଗିଗଲେ । କାରଣ କ'ଣ ଜାଣିବାକୁ ଚାହିଁଲେ । ଆମେ ତାଙ୍କୁ ସବୁକଥା ଜଣାଇଲୁ । ରାଜଜେମା ଟିକିଏ ଚିନ୍ତା କଲେ । ତାପରେ ଆଦେଶ ଦେଲେ— "ରନ୍ଧନଶାଳାକୁ ସେଇ ମାଂସ ଦରକାର । ଆମକୁ ସେଇ ମାଂସ ଯୋଗାଇବାକୁ ହେବ ।"

ଆମେ ଅନୁନୟ ବିନୟ ହୋଇ ଗୁହାରି କଲୁ—"ମଣିଷ ମାରିବା ଏକ ଗୁରୁତର ଅପରାଧ । ଭୁଲରେ ମଣିଷଟିଏ ମାରି ଦେଇଛୁ । ପ୍ରତିଦିନ ଯୁବକଟିଏ ମାରିଲେ, କଥାଟା ପ୍ରକାଶ ପାଇବ । ଆମର ସବଂଶରେ ଶିର ଛେଦନ ନିଶ୍ଚିତ । ଏଥିରୁ ଆମେ କ'ଣ ପରିତ୍ରାଣ ହୋଇପାରିବୁ ?"

ରାଜଜେମା ଆଦେଶ ଦେଲେ—"ତୁମେ ଯେପରି ଭାବରେ ଲୁଚାଇକରି ଯୁବକଟିକୁ ହତ୍ୟାକରି ଆମକୁ ମାଂସ ଦେଇଥିଲ, ସେହିଭଳି ଯୁବକମାନଙ୍କୁ ଲୁଚାଇ କରି ହତ୍ୟାକରି ଆମକୁ ମାଂସ ଦିଅ । ଯଦି ଭବିଷ୍ୟତରେ କଥାଟା ପଦାକୁ ଆସେ, ମୁଁ ଅଭୟ ଦେଉଛି ଏଥିପାଇଁ ପ୍ରାଣଦଣ୍ଡ କାହାକୁ ଦିଆହେବ ନାହିଁ ।"

ସେଇଦିନୁ ଆମେ ଯୁବକମାନଙ୍କୁ ଭୁଲାଇ କରି ଜଙ୍ଗଲକୁ ନେଇଯାଉ । ସେଠି ତାଙ୍କୁ ହତ୍ୟାକରୁ । ତାଙ୍କର ମାଂସ ରନ୍ଧନଶାଳାକୁ ଯୋଗାଉ ।

ଏକଥା ଶୁଣି ସେଠାରେ ବସିଥିବା ଲୋକେ ଉତ୍ୟକ୍ତ ହୋଇଉଠିଲେ । ଏମିତିକ ରାଜା ଓ ଭେଦାମାନଙ୍କୁ ହତ୍ୟା କରିବାକୁ ଚିତ୍କାର କଲେ । ଅବସ୍ଥା ଅସମ୍ଭାଳ ହେଲା । ସୈନ୍ୟମାନଙ୍କୁ ଶାନ୍ତ ରଖିବା ପାଇଁ ଡକରା ହେଲା ।

ସୈନ୍ୟମାନେ ଆସିବାରୁ ଲୋକମାନେ ଶାନ୍ତ ପଡ଼ିଲେ । ଭୟରେ ଲୋକେ ଚୁପ୍ ହେବାରୁ ତଦନ୍ତ ପୁଣି ଚାଲିଲା । ଭେଦାମାନଙ୍କର କଥାର ସତ୍ୟତା ଜାଣିବା ପାଇଁ ରାଜା ରନ୍ଧବାଳାଙ୍କୁ ଡକାଇଲେ । ରାଜଜେମା ଆସି ସର୍ବସାଧାରଣଙ୍କ ଆଗରେ ଉପସ୍ଥିତ ହେଲେ । ରାଜା ଭେଦାମାନେ କହିଥିବା ସମସ୍ତ କଥା ରାଜଜେମାଙ୍କୁ ଜଣାଇଦେଲେ । ତାପରେ ତାଙ୍କୁ ପ୍ରଶ୍ନ ହେଲା— "ଭେଦାମାନଙ୍କ ଅଭିଯୋଗ କ'ଣ ସତ୍ୟ ।"

"ତାହା ସଂପୂର୍ଣ୍ଣ ସତ୍ୟ" ରାଜଜେମା ଉତ୍ତର ଦେଲେ ।

"ତୁମେ କ'ଣ ଏକଥା ମୋ ଗୋଚରକୁ ଆଣିଥିଲ ?" ରାଜାଙ୍କର ପ୍ରଶ୍ନଥିଲା ।

"ନାଁ, ମୁଁ ନିଜେ ନିଜେ ଏ କଥାର ଫଇସଲା କରିଥିଲି ।" ରାଜଜେମା କହିଲେ ।

ତଦନ୍ତ ଏହିଠାରେ ସରିଗଲା । ରାଜା ଟିକଏ ଚୁପ୍‌ହୋଇ ବସିଲେ । ତାପରେ ଆଦେଶ ଦେଲେ—"ରାଜଜେମାଙ୍କ ଆଦେଶରେ ରାଜ୍ୟରୁ ବହୁ ଯୁବକଙ୍କର ମୃତ୍ୟୁ ଘଟିଛି । ଏହା ଏକ ଗୁରୁତର ଅପରାଧ । ଏଥିପାଇଁ ରାଜଜେମା ଦାୟୀ । ରାଜଜେମା କହିଲେ ବି ଭେଦାମାନେ ରାଜାଙ୍କ କାନକୁ କଥାଟା ନ ଆଣି ଯୁବକମାନଙ୍କୁ ହତ୍ୟା କରିଛନ୍ତି । ସେଥିପାଇଁ ସେମାନେ ବି

ଦୋଷୀ । ଯେହେତୁ ରାଜାଙ୍କ ତରଫରୁ ଶିର ଛେଦନ ହେବ ନାହିଁ ବୋଲି ରାଜକେମା ଭେଦାମନଙ୍କୁ ଅଭୟ ଦେଇଛନ୍ତି ଏବଂ ସେଇ ଅନୁସାରେ ଭେଦାମାନେ ରାଜକେମାଦେଶ ପାଳନ କରିଛନ୍ତି, ସେମାନଙ୍କୁ ମୃତ୍ୟୁ ଦଣ୍ଡରୁ ଅବ୍ୟାହତି ମିଳିଲା । ରାଜକେମାଙ୍କୁ ବି ମୃତ୍ୟୁଦଣ୍ଡ ମିଳିବାର କଥା । ସେ ଜଣେ ନାରୀ । ନାରୀମାନଙ୍କୁ ମୃତ୍ୟୁଦଣ୍ଡ ଦେବା ଧର୍ମସଂଗତ ନୁହେଁ । ତେଣୁ ତାଙ୍କୁ ମଧ୍ୟ ରାଜକ୍ଷମା ବଳରେ ମୃତ୍ୟୁଦଣ୍ଡରୁ ଅବ୍ୟାହତି ଦିଆଗଲା । କିନ୍ତୁ ଭେଦାମାନେ ଯେଉଁ ଅପରାଧ କଲେ, ତା' ଫଳରେ ସେମାନେ ଆଉ ଜନବସତିରେ ରହିବେ ନାହିଁ । ଜନବସତିର ଦୂରରେ ସେମାନେ ରହିବେ । କାହାର ହତା ଭିତରେ ପ୍ରବେଶ କଲେ, ସେମାନେ ଦଣ୍ଡିତ ହେବେ । କେହି କେବେ ତାଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିପାରିବେ ନାହିଁ । କଲେ, ସେମାନେ ବି ଦଣ୍ଡମାପ୍ତ ହେବେ । ସେମାନେ ଜୀବନ ନିର୍ବାହ ପାଇଁ ଭିକ୍ଷା ଉପରେ ନିର୍ଭର କରିବେ । ଅନ୍ୟମାନେ ବ୍ୟବହାର କରୁଥିବା ଜଳାଶ୍ରୟରୁ ସେମାନେ ପାଣି ବ୍ୟବହାର କରିବେ ନାହିଁ । ସେମାନେ ପାଣିପାଇଁ ପ୍ରକୃତି ସୃଷ୍ଟ ନଈ ନାଳ ଉପରେ ନିର୍ଭର କରିବେ । ପୁରୁଷାନୁକ୍ରମେ ସେମାନେ ଘୃଣ୍ୟ ହୋଇ ରହିବେ । ସେମାନଙ୍କୁ ଲୋକେ ରୋଡ଼ିୟା ବୋଲି ଡାକିବେ ।"

ରଜା ରତ୍ନାବଳି ଆଡ଼କୁ ଅନାଇ କହିଲେ—"ଯାଅ, ଯେଉଁ କର୍ମ କରିଛ, ସେଥିପାଇଁ ତୁମେ ମଧ୍ୟ ନିର୍ବାସିତ ହେଲ । ତୁମେ ରୋଡ଼ିୟାଙ୍କ ସାଥିରେ ରହିବ । ଆଜିଠାରୁ ରାଜପୋଷାକ ତ ଦୂରର କଥା ଅନ୍ତର୍ବାସ ବି ବ୍ୟବହାର କରି ପାରିବ ନାହିଁ । ରୋଡ଼ିୟା ସ୍ତ୍ରୀମାନେ ବି ଅନ୍ତର୍ବାସ ବ୍ୟବହାରରୁ ବଞ୍ଚିତ ହେଲେ ।"

ରାଜାଦେଶ ଶୁଣି ରାଜକୁମାରୀ ରତ୍ନବାଳା ତାଙ୍କ ଦେହରୁ ଅନ୍ତର୍ବାସ ବାହାର କରିଦେଲ । ରାଜକର୍ମଚାରୀମାନେ ରୋଡ଼ିଆ ସ୍ତ୍ରୀମାନଙ୍କ ଦେହରୁ ଅନ୍ତର୍ବାସ ବାହାର କରିବାର ବ୍ୟବସ୍ଥା କଲେ ।

ରାଜ୍ୟର ଲୋକେ ତ ଉତ୍ତ୍ୟକ୍ତ ହୋଇଥିଲେ । ରୋଡ଼ିଆ-ମାନେ ଯେତେବେଳେ ଜନବସତି ଛାଡ଼ି ଜଙ୍ଗଲକୁ ଗଲେ, ତାଙ୍କ ପଛରେ ଲୋକେ ରୋଡ଼ିଆ ରୋଡ଼ିଆ ଚିତ୍କାର କରି ଚାଲିଥିଲେ ।

ଏବେ ବି ସିଂହଳରେ ରୋଡ଼ିଆ ସମ୍ପ୍ରଦାୟର ଲୋକ ବହୁତ ଅଛନ୍ତି । ସେମାନେ ଏକ ଭ୍ରାମ୍ୟମାଣ ଜାତି । ସେମାନେ ବୁଲି ବୁଲି ନାଚ ଗୀତ ଗାଇ ମ୍ୟାଜିକ ଦେଖାଇ ଆଉ ଭିକମାଗି ପେଟ ପୋଷନ୍ତି । କ୍ୱଚିତ ଅର୍ଜନପାଇଁ କାମ କରନ୍ତି । ସେମାନେ ରାଜା କି ସରକାରଙ୍କୁ ଟେକ୍ସ ଦିଅନ୍ତି ନାହିଁ । ମଲା ଜୀବର ଚମଡ଼ାରେ ଦଉଡ଼ି ବଳନ୍ତି । ସେମାନେ ଘୃଣ୍ୟ । ଅନ୍ୟ ସମ୍ପ୍ରଦାୟର ଲୋକେ ତାଙ୍କୁ ଝିଅ ଦେବାର ପ୍ରଶ୍ନ ଉଠେ ନାହିଁ । ତେଣୁ ତାଙ୍କର ଭାଇ ଭଉଣୀକୁ ବି ବିବାହ କରେ । ଏବେ ବି ତାଙ୍କ ଜାତିର ସ୍ତ୍ରୀ ଲୋକମାନେ ଅନ୍ତର୍ବାସ ପିନ୍ଧନ୍ତି ନାହିଁ ।

ବାରିକ ସେମାନଙ୍କୁ ପଦାରେ ପକାଇଥିଲ । ପ୍ରତିଶୋଧ ସ୍ୱରୂପ ସେମାନେ ବାରିକ ଠାରୁ ଭିକ ଗ୍ରହଣ କରନ୍ତି ନାହିଁ ।

ସେମାନେ ନ୍ୟୁନ ଭାବରେ ଭିକ ମାଗନ୍ତି ନାହିଁ । ସେମାନଙ୍କ ମତରେ ଏହା ତାଙ୍କର ରାଜଦତ୍ତ କର୍ମ । ସେଥିପାଇଁ ଔଦ୍ଧତ୍ୟ ସହକାରେ ଭିକ ସେମାନେ ଦାବି କରିଥାନ୍ତି ।

———

# ପାଣି କଣ୍ଠା ପର୍ବ

ବହୁ କାଳ ପୂର୍ବେ ଅନୁରାଧାପୁରରେ ଗଜବାହୁ ରାଜୁତି କରୁଥିଲେ । ସେ ଥିଲେ ଅତ୍ୟନ୍ତ ଧାର୍ମିକ । ନ୍ୟାୟପରାୟଣ । ପ୍ରଜାବତ୍ସଳ । ସେଥିପାଇଁ ପ୍ରଜାମାନେ ତାଙ୍କୁ ଖୁବ ଭଲ ପାଉଥିଲେ ।

ପ୍ରଜାମାନେ ଶାନ୍ତି ଓ ସୁଖରେ ରହନ୍ତୁ, ଏହା ଥିଲା ତାଙ୍କର ଉଦ୍ଦେଶ୍ୟ । ଲୋକମାନଙ୍କର ଅବସ୍ଥା ଜାଣିବା ପାଇଁ ସେ ଗୁପ୍ତଚରମାନଙ୍କ ଉପରେ ନିର୍ଭର କରୁ ନ ଥିଲେ । ସ୍ୱ-ଚକ୍ଷୁରେ ସେମାନଙ୍କ ଅବସ୍ଥା ଦେଖିବାକୁ ଓ ସ୍ୱ-କାନରେ ସେମାନଙ୍କ ମତାମତ ଶୁଣିବାକୁ ସେ ପସନ୍ଦ କରୁଥିଲେ । ସେଥିପାଇଁ ସେ ଛଦ୍ମ ବେଶରେ ବୁଲୁଥିଲେ । ଲୋକଙ୍କ ସାଥୀରେ ମିଶୁଥିଲେ । ଲୋକଙ୍କର ସୁବିଧା ଅସୁବିଧା ମତାମତ ବୁଝି ନେଉଥିଲେ ।

ଦିନେ ରାତିରେ ସେ ଛଦ୍ମ ବେଶରେ ବିଜେ କରିଥିଲେ । ସେତେବେଳକୁ ରାତି ଅଧ । ସେ ଦେଖିଲେ ରାସ୍ତା କଡରେ କୁଡ଼ିଆଟିଏ । ସେଥିରେ ଆଲୁଅଟିଏ ଜଳୁଛି । ତାଙ୍କର ଆଗ୍ରହ ହେଲା । ସେ କୁଡ଼ିଆ ପାଖକୁ ଗଲେ । କବାଟ ଫାଙ୍କରେ ଦେଖିଲେ ଅତି ଦୁଃଖରେ ବୁଢ଼ୀଟିଏ ବସିଛି । ଖୁବ୍ ଚୁପ୍‌ଚାପ ହୋଇ । ଆଖିରୁ ତାର ଧାର ଧାର ହୋଇ ଲୁହ ବୋହି ଯାଉଥିଲା । ତାଙ୍କର କୌତୁହଳ ହେଲା । ଦ୍ୱାର ମୁହଁ କବାଟରେ ଚିହ୍ନ ଦେଇ ସେ ଫେରି ଆସିଲେ ।

ପରଦିନ ସକାଳେ ମନ୍ତ୍ରୀଙ୍କୁ ଡାକି କହିଲେ—"ମୁଁ ରାତିରେ ଗୋଟିଏ କୁଡ଼ିଆରେ ବୁଢ଼ୀଟିଏ କାନ୍ଦୁଥିବାର ଦେଖିଲି ।

ତା'ର ଦ୍ୱାର ମୁହଁରେ ମୁଁ ଚିହ୍ନ ଦେଇ ଆସିଛୁ । ସେ ବୁଢ଼ୀକୁ ମୋ ପାଖରେ ହାଜର କରାଅ ।"

ଆଦେଶ ପାଳନ କରାହେଲା । ବୁଢ଼ୀ ଆସିଲା । ବୁଢ଼ୀଟିର ପ୍ରକୃତରେ ବୟସ ପାଚି ଗଲାଣି । ସେ ବୟସ ଭାରରେ ନଇଁ ଗଲାଣି । ରାଜା ତାକୁ ପଚାରିଲେ—"ମା, ତୁମେ କାଲି ରାତି ଅଧରେ ଦୁଃଖରେ ବସିଥିଲ । ତମ ଆଖିରୁ ଅଜସ୍ର ବାରି ବୋହି ଯାଉଥିଲା । କାରଣ କ'ଣ କହିବ କି ?"

ରାଜାଙ୍କ କଥା ଶୁଣି ବୁଢ଼ୀ ଆଶ୍ଚର୍ଯ୍ୟ । ସେ ଉତ୍ତର ଦେଲା ନାହିଁ । ସଙ୍କୋଚରେ ମୁଣ୍ଡକୁ ତଳକୁ ନୁଆଁଇ ଦେଲା ।

ରାଜା ଆଉଥରେ କହିଲେ—"ମୁଁ ଏ ଦେଶର ରାଜା । କାହାର ଦୁଃଖ ନ ରହୁ, ମୁଁ ଏହା ଚାହେଁ । ଯଦି କାହାର ଦୁଃଖ ହେଲା, ସେଇ ଦୁଃଖ ଦୂର କରିବା ମୋର ଧର୍ମ । ମୁଁ ଯଦି ଏହା ନ ପାରିବ, ରାଜଗାଦିରେ ବସି ରହିବାର ନୈତିକ ଅଧିକାର ମୋର ନାହିଁ । ମୁଁ ତମର ଦୁଃଖ ଶୁଣିବାକୁ ଚାହେଁ । ତାକୁ ଲାଘବ କରିବାକୁ ଚେଷ୍ଟା କରିବ ।"

ବୁଢ଼ୀଟି କହିଲା—"ମହାରାଜ, ଆଜ ନୁହେଁ, ବହୁ ବର୍ଷ ଧରି ନିଶବ୍ଦରେ ମୁଁ କାନ୍ଦି ଆସିଛୁ । ରାତି ରାତି କାନ୍ଦି କାନ୍ଦି ବିତାଇ ଦିଏ । କାହାକୁ ମୋ ଦୁଃଖ କଥା କହି ନାହିଁ । ତୁମ୍ଭେ ପଚାରୁଛନ୍ତି । ତେଣୁ କହୁଛି—ତୁମ୍ଭଙ୍କର ବାପାଙ୍କ ସମୟର କଥା । ତାଙ୍କ ସହିତ ଚୋଳ ରାଜାଙ୍କର ଯୁଦ୍ଧ ହୋଇଥିଲା । ତୁମ୍ଭଙ୍କର ବାପା ଯୁଦ୍ଧରେ ହାରିଗଲେ । ଚୋଳ ରାଜା ତୁମ୍ଭଙ୍କ ବାପାଙ୍କର ବାର ହଜାର ସୈନ୍ୟଙ୍କୁ ବନ୍ଦୀ କଲେ । ସେଇ ସୈନ୍ୟମାନଙ୍କ ଭିତରେ ମୋର ଦୁଇଟି ଯାକ ପୁଅ ଥିଲେ । ସେଇ ଦୁଃଖରେ ସ୍ୱାମୀ ମୋର ମଲା । ପୁଅଙ୍କ ବାଟ ଚାହିଁ ମୁଁ ବସିଛୁ । ସେଇଥି ପାଇଁ ମୁଁ କାନ୍ଦ

ଥିଲ । ରାଜା ତ ନିଜେ ଏଥିରେ ସଂପୃକ୍ତ । ତେଣୁ ତାହାର ପାଖରେ ଗୁହାରି ମୁଁ କରି ନାହିଁ ।”

ରାଜା ବୁଢ଼ୀର ଦୁଃଖ ପାଇଁ ନିଜକୁ ଦାୟୀ କଲେ । ସେ ଭାବିଲେ—ଯୁଦ୍ଧବନ୍ଦୀଙ୍କୁ ମୁକ୍ତ କରିବା ରାଜାର ଦାୟିତ୍ୱ । ତେଣୁ ସେ ତାଙ୍କ କର୍ତ୍ତବ୍ୟରେ ଖିଲାପ କରିଛନ୍ତି । ସେଥିପାଇଁ ସେ ଆଦେଶ ଦେଲେ—“ଆଜିଠାରୁ ବୁଢ଼ୀର ଗ୍ରାସାଚ୍ଛାଦନ ପାଇଁ ଯାହା ଦରକାର, ତାହା ରାଜ ଭଣ୍ଡାରରୁ ଦିଆହେବ ।”

ରାଜା ଦରବାରରେ ବସି ବୁଢ଼ୀ କଥାର ସତ୍ୟାସତ୍ୟ ଅନୁସନ୍ଧାନ କଲେ । ସମସ୍ତେ କହିଲେ—“ବୁଢ଼ୀ ଯାହା କହୁଛି, ଏକାନ୍ତ ସତ୍ୟ ।” ରାଜା ପାତ୍ରମନ୍ତ୍ରୀମାନଙ୍କ ଉପରେ ବିରକ୍ତ ହୋଇ କହିଲେ—“ଏପରି କଥାଟିଏ ମୋ କାନକୁ ନ ଆଣି ତୁମେ ଭୁଲ୍ କରିଛ ।”

ରାଜା ସେଇଦିନୁ ସ୍ଥିର ହୋଇ ବସି ପାରିଲେ ନାହିଁ । ଯୁଦ୍ଧ ଆୟୋଜନରେ ସେ ବ୍ୟସ୍ତ ରହିଲେ । ଅଳ୍ପଦିନ ଭିତରେ ତାଙ୍କର ସୈନ୍ୟ ସଂଗ୍ରହ ସହ ଅନ୍ୟାନ୍ୟ ଆୟୋଜନ ହୋଇଗଲା ।

ସାଥୀରେ ସୈନ୍ୟ ବାହିନୀ ଓ ରାଜ ରାକ୍ଷସ ନୀଲକୁ ଧରି ସେ ଚୋଲ ରାଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କଲେ । ଭାରତ ଓ ଶ୍ରୀଲଙ୍କାର ସମୁଦ୍ର ଦୂରତ୍ୱ ଯେଉଁଠି କମ୍, ସେଇଠି ସେ ଡେରା ପକାଇଲେ । ସେ ତାଙ୍କ ରାଜ୍ୟ ଓ ଚୋଳ ରାଜ୍ୟ ମଧ୍ୟରେ ଥିବା ସମୁଦ୍ରକୁ ଅନାଇ ରହିଲେ । କିଛି ସମୟ ଗଲାଗଲା । ସେ ରାଜ ରାକ୍ଷସ ନୀଲକୁ ଚାହିଁ କହିଲେ—“ନୀଲ, ମୁଁ ଚୋଳ ରାଜ୍ୟ ଯିବାକୁ ଚାହେଁ । ଏ ସମୁଦ୍ର ଶୁଖାଇ ଦିଅ ।”

ନୀଲ ରାକ୍ଷସ ଆଗକୁ ଆଗେଇ ଆସିଲା । ସେ ତାର ଲୁହାକୁ ଉଠାଇ ସମୁଦ୍ର ପାଣିକୁ ପିଟିବାରେ ଲାଗିଲା । ତାର

ଆଘାତ ପାଇ ସମୁଦ୍ର ଦି ଭାଗରେ ବିଭକ୍ତ ହୋଇଗଲା । ତା ତଳେ ଥିବା ମାଟି ଦେଖାଗଲା । ସୈନ୍ୟମାନଙ୍କୁ ସେଠି ରହିବାକୁ ରାଜା ଆଦେଶ ଦେଲେ । ସମୁଦ୍ର ଆର ପଟେ ଥିବା ଶ୍ବେଳ ରାଜ୍ୟକୁ ରାଜା ବିଜେ କଲେ । ସାଥିରେ ଏକମାତ୍ର ମାଳ । ସେମାନେ ସମୁଦ୍ର ପାର ହୋଇ ସାରିବା ପରେ ପାଣି ପୁଣି ମିଶିଗଲା ।

ସେପଟେ ଗୋଟିଏ ଜାଗାରେ ବହୁତ ହାତୀ ଓ ସେମାନଙ୍କର ମାହୁନ୍ତ ଜମା ହୋଇଥିଲେ । ଗଜବାହୁ ସେମାନଙ୍କ ପାଖକୁ ଗଲେ । ମାଳକୁ ପାଖକୁ ଡାକି କହିଲେ—"ତୋ କରାମତି ଟିକିଏ ଦେଖାଇ ଦେ ।"

ମାଳ ଛାତି ଫୁଲାଇ ଦୁଇଟି ହାତୀ ପାଖକୁ ଗଲା । ତାର ଡର ଭୟ କିଛି ନ ଥାଏ । ଦୁଇଟି ହାତରେ ଦୁଇଟି ହାତୀ ସେ ଉଠାଇ ଆଣିଲା । ତାଙ୍କୁ ଏମିତି ଭାବରେ ପିଟି ଦେଲା ଯେ ସେମାନେ ଛତୁ ହୋଇଗଲେ । ସେମାନଙ୍କର ଚିହ୍ନ ବର୍ଣ୍ଣ ରହିଲା ନାହିଁ ।

ମାହୁନ୍ତମାନେ ଏ ଦୃଶ୍ୟ ଦେଖି ଚୁନଆ । ସେଠି ସେମାନେ ଆଉ ରହିଲେ ନାହିଁ । ପ୍ରାଣ ବିକଳରେ ରାଜାଙ୍କ ପାଖକୁ ଧାଇଁଲେ । ହସ୍ତୀ ଦୁଇଟିର ଯାହା ଅବସ୍ଥା ହେଲା, ସେ କଥା ସେମାନେ ଶ୍ବେଳ ରାଜାଙ୍କୁ ଜଣାଇଲେ ।

ଶ୍ବେଳ ରାଜା ଏକଥା ବିଶ୍ବାସ କରି ପାରିଲେ ନାହିଁ । ସ୍ବଚକ୍ଷୁରେ ଅବସ୍ଥା ଦେଖିବାକୁ ସାଥିରେ ପାତ୍ର ମନ୍ତ୍ରୀଙ୍କୁ ଧରି ହାତୀ ଆଖଡ଼ାକୁ ବିଜେ କଲେ ।

ଶ୍ବେଳ ରାଜା ଓ ତାଙ୍କ ଲୋକମାନେ ସମୁଦ୍ର କୂଳରେ ଦୁଇଟି ଲୋକଙ୍କୁ ଦେଖିଲେ । ହାତୀ ଦୁଇଟିଙ୍କର ଅବସ୍ଥା ବି ଅନୁଧ୍ୟାନ କଲେ । ସେମାନଙ୍କୁ ଡକାଇ ଆଣି ରାଜା ପଚାରିଲେ—

"ତୁମ୍ଭମାନଙ୍କର ପରିଚୟ କ'ଣ ?"

"ମୁଁ ଲଙ୍କେଶ୍ୱର ଗଜବାହୁ । ଏ ମୋର ରାକ୍ଷସ ମାଲ । ସମୁଦ୍ର ଆରପଟେ ମୋର ସୈନ୍ୟମାନେ ଆଦେଶ ପାଇଁ ଅପେକ୍ଷା କରିଛନ୍ତି ।" ଗଜବାହୁ କହିଲେ ।

"ଆପଣ ଏପଟକୁ କିପରି ଆସିଲେ ?" ଚୋଲରାଜା ପଚାରିଲେ ।

"ମାଲ, ଆମେ କିପରି ଆସିଲେ, ଏକଥା ଚୋଳ ରାଜାଙ୍କୁ ଟିକିଏ ଦେଖାଇ ଦେ ।" ଗଜବାହୁ ମାଲକୁ କହିଲେ ।

ମାଲ ସମୁଦ୍ର ଭିତରେ ପଶିଗଲା । ସେ ଧରିଥିବା ଲୁହାକୁ ସମୁଦ୍ରକୁ ଆଘାତ କଲା । ପାଣି ଦୁ'ଭାଗ ହୋଇ ସମୁଦ୍ର ତଳ ଦେଖାଗଲା । ଚୋଳ ରାଜା ଦେଖିଲେ—ତାଙ୍କ ରାଜ୍ୟଠାରୁ ଲଙ୍କା ପର୍ଯ୍ୟନ୍ତ ଏକ ସୁନ୍ଦର ରାସ୍ତାଅଛି । ଏହା ଉପରେ ସମୁଦ୍ର ପାଣି ଖାଲି ଠିଆ ହୋଇଛି ।

ଚୋଳ ରାଜା କଳାକାଠ ପଡ଼ିଗଲେ । ତାପରେ ସେ ଗଜବାହୁଙ୍କୁ ଆସିବାର କାରଣ ପଚାରିଲେ ।

ଗଜବାହୁ କହିଲେ—"ବହୁଦିନ ତଳେ ମୋ ବାପାଙ୍କ ସହ ଆପଣଙ୍କର ଯୁଦ୍ଧ ହୋଇଥିଲା । ସେଥିରେ ଆମର ବାର ହଜାର ସୈନ୍ୟଙ୍କୁ ଆପଣ ବନ୍ଦୀ କରିଥିଲେ । ଆଜି ସେମାନଙ୍କୁ ମୁକୁଳାଇବାକୁ ଆସିଛି ।"

"ସେମାନେ ଯେ ମୋର ବନ୍ଦୀ", ଚୋଳରାଜା କହିଲେ ।

"ତାହା ମୁଁ ଜାଣେ । ଆପଣ ଯଦି ବିନା ଯୁଦ୍ଧରେ ସେମାନଙ୍କୁ ମୁକ୍ତ ନ କରନ୍ତି, ମୁଁ ବାର ହଜାର ସୈନ୍ୟ ଆଣିଛି । ଯୁଦ୍ଧ କରି ସେମାନଙ୍କୁ ମୁଁ ମୁକ୍ତ କରିବି । ଆପଣ ମୋର ଶକ୍ତି ଦେଖିଲେ । ଯଦି ଚାହିଁବେ, ଯୁଦ୍ଧ କରିବା ।"

ତାପରେ ସେ ମାଳ ଆଡ଼କୁ ଅନାଇ କହିଲେ—"ତୋର ପରାକ୍ରମ ଦେଖା ।"

ମାଳ କିଛି ଶୁଖିଲା ବାଲି ନେଇଗଲା । ତାକୁ ହାତ ମୁଠାରେ ରଖି ବେଶ୍ ଚିପିଲା । ଟପ୍ ଟପ୍ ହୋଇ ପାଣି ବୋହିଲା । ସେ ତାର ଲୁହା ବାଡ଼ିକୁ ଧରି ଘାଇଁ ଘାଇଁ ବୁଲାଇଲା । ବୁଲା ବନ୍ଦ ହୋଇନାହିଁ, ପ୍ରବଳ ବତାସ ଓ ବର୍ଷା ମାଡ଼ି ଆସିଲା । ସମସ୍ତେ ଜୁଡ଼ୁବୁଡ଼ୁ ଓଦା ଖାଲି ହେଲେନ, ଗୋଟିଏ ଜାଗାରେ ସ୍ଥିର ହୋଇ ଛିଡ଼ା ହେବା ସେମାନଙ୍କ ପକ୍ଷେ ଅସମ୍ଭବ ହେଲା । ମାଳ ଲୁହା ବାଡ଼ି ବୁଲାଇବା ବନ୍ଦକଲା । ବର୍ଷା ପବନ ବନ୍ଦ ହୋଇଗଲା । ଆକାଶ ପୂର୍ବପରି ନିର୍ମଳ ହୋଇଗଲା ।

ସ୍ଥେଳ ରଜାଙ୍କୁ ତାଙ୍କର ମନ୍ତ୍ରୀମାନେ କହିଲେ— "ମହାରାଜ, ହାଣ୍ଡି ଦୁଇଟାକୁ ଉଠାଇ କିପରି କଟ ତାଙ୍କୁ ଛତ୍ରୁ କରିଦେଲା, ଆମେ ମାହୁନ୍ତମାନଙ୍କ ଠାରୁ ଶୁଣିଥିଲୁ । ମାଳର କରାମତି ସ୍ୱଚକ୍ଷୁରେ ଦେଖିଲେ । ଗଜବାହୁଙ୍କର ବାର ହଜାର ସୈନ୍ୟ ମଧ୍ୟରୁ ମାଳ ଜଣେ । ଜଣେ ତ ଏପରି କାମ କରିପାରୁଛି । ବାର ହଜାର ସୈନ୍ୟ ମାଡିଲେ, ଆମ ଦେଶ ରହିବ ନାହିଁ । ଆପଣଙ୍କୁ ଭଲ ବୁଦ୍ଧି ଆସୁ । ଆପଣ ଗଜବାହୁଙ୍କ ସାଥିରେ ସନ୍ଧି ସ୍ଥାପନ କରନ୍ତୁ । ତାଙ୍କର ବାର ହଜାର ସୈନ୍ୟଙ୍କୁ ମୁକ୍ତ କରି ଦିଅନ୍ତୁ । ତାଙ୍କୁ ଆମର ବାର ହଜାର ସୈନ୍ୟଙ୍କୁ ଦାନ କରନ୍ତୁ । ଏହା ହାରି ଯାହା କ୍ଷତି ହେବ, ଯୁଦ୍ଧରେ ଯେଉଁ କ୍ଷତି ହେବ, ତା' ତୁଳନାରେ ଏହା କିଛି ନୁହେଁ ।"

ସ୍ଥେଳ ରାଜା ମନ୍ତ୍ରୀମାନଙ୍କର ପରାମର୍ଶ ଗ୍ରହଣ କଲେ । ସେ ଲଙ୍କାର ସୈନ୍ୟମାନଙ୍କୁ ମୁକ୍ତ କରିଦେଲେ । ବାର ହଜାର

ସୈନ୍ୟ ସେଇମିତି ଦେଲେ । ତା'ଛଡ଼ା ଛବଶଟି ହାତୀ ଉପହାର ସ୍ୱରୂପରେ ଦେଲେ ।

ଭୃତ୍ୟସ୍ୱ ଥର ପାଇଁ ସେ ସମୁଦ୍ରକୁ ପୁଣି ପିଟିଲା । ସମୁଦ୍ର ଭିତରେ ରାସ୍ତା ହୋଇଗଲା । ସୈନ୍ୟମାନଙ୍କୁ ଧରି ରାଜା ଗଜବାହୁ ସ୍ୱଦେଶକୁ ଫେରି ଆସିଲେ ।

ରାଜଧାନୀରେ ପହଞ୍ଚି ଗଜବାହୁ ପ୍ରଥମେ ବୁଢ଼ୀକୁ ଡକାଇଲେ । ତା'ର ପୁଅ ଦୁଇଟି ତାକୁ ସମର୍ପି ଦେଇ କହିଲେ— "ଏ ତ ତମର ଦୁଇ ପୁଅ ।"

ବୁଢ଼ୀର ଆନନ୍ଦ ଦେଖେ କିଏ ? ଆନନ୍ଦରେ ତାର ଅଶ୍ରୁ ବୋହିଗଲା ।

ଲଙ୍କାର ଲୋକମାନେ ଗଜବାହୁର ବିଜୟ ପାଇଁ ମହୋତ୍ସବ କଲେ । ସେମାନେ ଢୋଲ ବଜାଇଲେ ଝାଞ୍ଜ ପିଟିଲେ । ବଂଶୀ ଓ ଶଙ୍ଖ ଫୁଙ୍କିଲେ । ବାଦ୍ୟର ଶବ୍ଦରେ ସାରା ଦେଶ କମ୍ପି ଉଠିଲା ।

ସବୁ ହାତୀ ସୁନ୍ଦର ଭାବରେ ସଜ୍ଜିତ ହେଲା । ସବୁଠାରୁ ସୁନ୍ଦର ଭାବରେ ସଜା ହୋଇଥିବା ହାତୀ ଉପରେ ଲଙ୍କାର ବିଖ୍ୟାତ ଗୁରୁ ମନ୍ଦିରର ନିଦର୍ଶନ ରଖାଗଲା । ସେଇ ହାତୀ ଆଗେ ଆଗେ ଚାଲିଲା । ତା ପଛରେ ଗଜବାହୁ ବିଜେ କରିଥିବା ହାତୀ, ତା ପଛକୁ ପଛ ଅନ୍ୟ ହାତୀମାନେ ଚାଲିଥିଲେ । ସେଥିରେ ବସିଥିଲେ ମାଳ, ରାଜ୍ୟର ମନ୍ତ୍ରୀ ପରିଷଦର ସଭ୍ୟ ଆଉ ଗଣ୍ୟ-ମାନ୍ୟ ବ୍ୟକ୍ତି । ତା ପଛେ ପଛେ ଚାଲିଥିଲେ ମୁକ୍ତ ବାର ହଜାର ସୈନ୍ୟ । ତାଙ୍କ ପଛକୁ ଚୋଳ ରାଜା ଦେଇଥିବା ବାର ହଜାର ସୈନ୍ୟ ।

ମାଲଓ୍ୟାଣ୍ଟୁ ଓସ୍ମୁା ପାଖରେ ଶୋଭାଯାତ୍ରା ବନ୍ଦହେଲା । ମାଲ ଓ ପ୍ରଧାନମନ୍ତ୍ରୀ ହାତୀରୁ ଓହ୍ଲାଇ ସୁନା କଳସୀ ନେଇ ନଦୀରୁ ପାଣି ଆଣିବାକୁ ଗଲେ । ମାଲ ତାର ଲୁହାର ବାଡ଼ି ଉଠାଇ ପୁଣି ପାଣିକୁ ପିଟିଲା । ପାଣି ଦୁଇଭାଗ ହୋଇ ତଳ ମାଟି ଦେଖାଗଲା ।

ଏ ଦୃଶ୍ୟ ଲୋକମାନଙ୍କୁ ସ୍ତମ୍ଭୀଭୂତ କରିଦେଲା । ପୁଣି ପାଣି ଆସ୍ତେ ଆସ୍ତେ ମିଶିଗଲା ।

ମନ୍ତ୍ରୀ ପାଣି କଳସରେ ପୂରାଇଲେ । ଶୋଭାଯାତ୍ରା ପୁଣି ରାଜ ପ୍ରାସାଦକୁ ଫେରି ଆସିଲା । ରାଜା ତ ନାହିଁ ନ ଥିବା ଭୋଜର ଆୟୋଜନ କରିଥିଲେ । ଦେଶର ସମସ୍ତଙ୍କୁ ସେଠାରେ ଆପ୍ୟାୟିତ କରାଗଲା ।

"ଏହି ବିଜୟକୁ ମନେ ରଖିବାକୁ ହେବ ।" ଏହା ଥିଲା ଲୋକଙ୍କର ଦାବି ।"

ରାଜା ଲୋକମତକୁ ସମ୍ମାନ ଦେଲେ । ରାଜାଦେଶ ହେଲା—"ପ୍ରତି ବର୍ଷ ଏହି ଉତ୍ସବ ଜାକଜମକରେ ପାଳନ କରାଯିବ ।"

ମାଲ ଯେଉଁଠାରେ ସମୁଦ୍ର ଦ୍ୱିଭାଗ କରି ସ୍ୱେଲ ରାଜ୍ୟକୁ ଯାଇଥିଲା, ଏବେକାର କାଣ୍ଡି ପାଖରେ ଏହା ଅବସ୍ଥିତ । ଏହା ଅଗଷ୍ଟ ମାସରେ ହୋଇଥିଲା ।

ପ୍ରତି ବର୍ଷ ଅଗଷ୍ଟ ମାସରେ କାଣ୍ଡିଠାରେ ମହାସମାରୋହରେ "ପାଣି କଟା" ଉତ୍ସବ ପାଳିତ ହୁଏ ।

ଲୋକେ ଏବେ ବି କହୁଛନ୍ତି—ମାଲ ବ୍ୟତୀତ କେହି ସ୍ୱେଲକୁ ଯିବା ପାଇଁ ବାଟ ମିଳି ନ ଥାନ୍ତା କି ସ୍ୱେଲ ଜୟ କରିବାର ପ୍ରଶ୍ନ ଉଠି ନ ଥାନ୍ତା ।

———

# ସ୍ତ୍ରୀର ପ୍ରେମିକ

ଗାଁର ମୁଖିଆଟି ତା'ର ସ୍ତ୍ରୀ ସହିତ ରହେ । ସେମାନଙ୍କର ପିଲାଛୁଆ କିଛି ନ ଥିଲେ । ମୁଖିଆଟି ମାମଲତକାର । ଲୋକେ ସ୍ଥାନ ଗ୍ରାମରେ ତାଙ୍କୁ ଡାକନ୍ତି । ତେଣୁ ସେ ସବୁବେଳେ ଘରେ ରହି ପାରେ ନାହିଁ । ବହୁ ସମୟ ଅନୁପସ୍ଥିତ ରହେ ।

ଘରେ ସ୍ତ୍ରୀ ତାର ଏକା । ତାର ସ୍ବୈରୀ ପ୍ରୀତି ଅଛି । ସ୍ବାମୀ ନ ଥିଲା ବେଳେ ପ୍ରେମିକ ତାର ଆସେ ।

ଥରେ ମୁଖିଆଟିର କିଛି କାମ ପଡ଼ିଲା ନାହିଁ । ମାସ ମାସ ଧରି ସେ ଘରେ ରହିଗଲା । ସ୍ତ୍ରୀଟିର ପ୍ରେମିକ ତା ଘରକୁ ଆସିବାକୁ ସୁବିଧା ପାଇଲା ନାହିଁ । ଫଳରେ ଦୁହିଁଙ୍କର ଭେଟ ହେଲା ନାହିଁ । ସେଥିପାଇଁ ସ୍ତ୍ରୀ ତାର ଖୁବ ବ୍ୟସ୍ତ । ସବୁବେଳେ ମୁଖିଆ ଉପରେ ରହେଇ ଖହେଇ ହୁଏ । ବିରକ୍ତି ପ୍ରକାଶ କରେ । ଠିକ୍ ଗୋଟିଏ ଡରୁଆ ବିରାଡ଼ି ପରି ଛନ ଛନ ହୁଏ ।

ଦିନ ପରେ ଦିନ ଗଡ଼ିଗଲା । ପ୍ରେମିକକୁ ନ ଦେଖି ମୁଖିଆର ସ୍ତ୍ରୀ ଖୁବ ହତାଶ ଅନୁଭବ କଲା । ଏହାର ଗୋଟିଏ କିଛି ପ୍ରତିକାର କରିବ, ସେଇଟା ତାର ଚିନ୍ତା ।

ସାଙ୍ଗ ସାଥୀ ମେଳରେ ବହୁ କଥା ପଡ଼େ । ଥରେ ସେ ସେମାନଙ୍କ ଠାରୁ ଶୁଣିଲା—ପାଖ ଜଙ୍ଗଲରେ ଗୋଟିଏ ଗଛରେ ଦେବତା ଅଛନ୍ତି । ତାଙ୍କ ଶରଣାପନ୍ନ ହେଲେ, ଯାହା ମନାସିବ,

ତାହା ମିଳିଯିବ । କଥାଟା ଶୁଣିଲା ବେଳକୁ ସେ ବହୁତ କଥା ଭାବିଲା । ଶେଷକୁ ସେ ସ୍ଥିରକଲା—ସେ ତା'ର ସ୍ୱାମୀ ଅନ୍ଧ ହୋଇଯିବାକୁ ପ୍ରାର୍ଥନା କରିବ । ସ୍ୱାମୀ ଅନ୍ଧ ହୋଇଗଲେ, ଅବାଧରେ ତାର ପ୍ରେମିକ ତା ଘରକୁ ଆସି ପାରିବ । ତାର କୌଣସି ଅସୁବିଧା ହେବ ନାହିଁ ।

ସେଇଦିନୁ ସନ୍ଧ୍ୟା ପୂର୍ବରୁ ସେ ଜଙ୍ଗଲରେ ଥିବା ଦେବତା ପାଖକୁ ଯାଏ । ପ୍ରାର୍ଥନା କରେ । କେଉଁଦିନ ତାର ଯିବା ବନ୍ଦ ହୁଏ ନାହିଁ କି ବେଳାରୁ ଅବେଳା ହୁଏ ନାହିଁ । ସ୍ୱାମୀଟି ତାର ବେଶ୍ ବୁଦ୍ଧିଆ । ସ୍ତ୍ରୀର ଢଙ୍ଗ ଢାଙ୍ଗ ସେ ଦେଖେ । ଏସବୁ ଦେଖି ତାକୁ ଭଲ ଲାଗେ ନାହିଁ । ମନେ ମନେ ବିରକ୍ତ ହୁଏ ।

ସ୍ତ୍ରୀର ଏଇ ଦୌଡ଼ା ଦୌଡ଼ିର ପରିସମାପ୍ତି ପାଇଁ ସେ ତା ସ୍ତ୍ରୀ ଉପରେ ବହୁତ କାମ ଲଦି ଦେଲା । ସେ ଭାବିଲା—ସ୍ତ୍ରୀକୁ ତାର ଫୁରୁସ୍ତ ମିଳିବ ନାହିଁ । ତେଣୁ ଜଙ୍ଗଲକୁ ଯିବା ସେ ବନ୍ଦ କରିଦେବ । ତା'ର ଯୋଜନାର ଫଳ କିଛି ହେଲା ନାହିଁ । ଯେତେ କାମ ଦେଲେବି ସ୍ତ୍ରୀ ତାର ସେସବୁ କାମ ସାରି ଜଙ୍ଗଲକୁ ଧାଏଁ । ଯଦି କାମ ନ ସରି ବେଳ ହୋଇଗଲା, ତେବେ ସେ କାମକୁ ସେଇଠି ରଖି ପଳାଇ ଯାଏ । ଆସିଲେ ସେ କାମ ସାରେ ।

ଜଙ୍ଗଲକୁ ଯାଇ ସ୍ତ୍ରୀ ତା'ର କ'ଣ କରୁଛି, ଜାଣିବାକୁ ମୂର୍ଖଆର ଭାରି ଇଚ୍ଛା ହେଲା ।

ଦିନେ ସ୍ତ୍ରୀକୁ ତାର ବହୁତ କାମ ଦେଲା । ସ୍ତ୍ରୀଟି ସବୁ କାମ ସାରି ପାରିଲା ନାହିଁ । ସନ୍ଧ୍ୟା ହୋଇ ଆସିଲା । କାମ ଅଧା କରି

ଡର ଡର ହୋଇ ସେ ଜଙ୍ଗଲକୁ ପଳାଇଲା । ସ୍ୱାମୀ ତାର ଜଙ୍ଗଲ ବାଟରେ ଅପେକ୍ଷା କରିଥିଲା । ସ୍ତ୍ରୀର ପିଛୁ ସେ ଧରିଲା ।

ସେ ଦେଖିଲା—ସ୍ତ୍ରୀ ତାର କଦଳୀ ପତ୍ରର ଖିଲଟିଏ କରିଛି । ସେଥିରେ କିଛି ଫୁଲ ନେଇଛି । ସେ ଖିଲକୁ ଖୋଲି ଯେଉଁ ଗଛରେ ଦେବତା ଅଛନ୍ତି ବୋଲି କୁହାଯାଏ, ତା'ର ମୂଳରେ ସବୁ ଫୁଲ ଢାଳି ଦେଲା । ହାତ ଦୁଇଟି ଯୋଡ଼ି ଜୁହାର କଲା । ଖୁବ ଜୋରରେ ସେ ପାଟି କରି କହିଲା—"ହେ ଗଛରେ ଥିବା ଦେବତା, ମୋ ଗୁହାରି ଶୁଣ । ମୋତେ ଦୟାକର । ମୋ ସ୍ୱାମୀକୁ ଅନ୍ଧ କରିଦିଅ ।"

ମୂଖିଆଟି ସ୍ତ୍ରୀର ମାନସିକ ଶୁଣି ତାଜୁବ । କାନ ତାର ଝାଇଁ ଝାଇଁ ହୋଇଗଲା । ସେ ସେଇଠି ଲୁଚି ବସିଲା । ସ୍ତ୍ରୀ ତାର ଧୂପ ଲଗାଇଲା । ପୁଣି ମୁଣ୍ଡିଆ ମାରି ଘରକୁ ଫେରିଲା । ତା'ର କିଛି ସମୟ ପରେ ମୂଖିଆ ଘରକୁ ଆସିଲା ।

ପରଦିନ ମୂଖିଆ ଗୋଟେ ପାରା ଧରିଲା । ତାକୁ ଧରି ସଂଧ୍ୟା ପୂର୍ବରୁ ଜଙ୍ଗଲକୁ ଗଲିଗଲା । ଯେଉଁ ଗଛରେ ଦେବତା ଅଛନ୍ତି ବୋଲି କୁହାଯାଏ, ସେଇଟା ଗୋଟେ ଖୁବ୍ ବଡ଼ ଗଛ । ପାରାକୁ ଧରି ସେଇ ଗଛରେ ସେ ଲୁଚି ବସିଲା ।

ସଂଧ୍ୟା ହେଲା । ସବୁଦିନ ପରି ସ୍ତ୍ରୀ ତାର ଆସିଲା । ଫୁଲ ତକ ଗଛ ମୂଳରେ ଦେଇ ଧୂପ ଧୂପ ଲଗାଇଲା । ତାପରେ ଖୁବ୍ ଜୋରରେ କହିଲା—"ହେ ଦେବତା, ମୋର ଗୁହାରି ଶୁଣ । ଶୀଘ୍ର ଟିକଏ ମୋ ସ୍ୱାମୀକୁ ଅନ୍ଧ କରିଦିଅ ।"

ଏତିକିବେଳେ ସ୍ତ୍ରୀଟି ଗଛ ଭିତରୁ ଗୋଟିଏ ଶବ୍ଦ ଶୁଣିଲା—"ହୋଉ ।"

ସେ ଭାବିଲା—ଦେବତା ତା ଉପରେ ପ୍ରସନ୍ନ ହେଲେଣି । ତେଣୁ ଗୁଣ୍ଡ ତାର ଧଡ଼୍ ଧଡ଼୍ ହେଲା । ସେ ଉପରକୁ ଅନାଇଲା । କହିଲା—"ପ୍ରଭୋ !"

ଗଛରୁ ଭାସି ଆସିଲା—"ତୋର ମନ କାମନା ଯଦି ତୁ ପୂର୍ଣ୍ଣ କରିବାକୁ ଚାହୁଁ, ତାହା ହେଲେ କଳା କୁକୁଡ଼ାର ପ୍ରଚୁର ମାଂସ ଓ ସରୁ ବାସ୍ନା ଚାଉଳର ଭାତ ତାକୁ ତୁ ଖାଇବାକୁ ଦେ ।"

ଏତିକବେଳେ ମୁଖିଆଟି ପାରାଟା ଛାଡ଼ିଦେଲା । ପାରାଟି ତାର ଡେଣା ଫଡ଼ ଫଡ଼ କରି ଉଡ଼ି ଚାଲିଗଲା । ଏହା ମୁଖିଆର ସ୍ତ୍ରୀ ଦେଖି ନେଲା । ସେ ଭାବିଲା—ଏହା ଦେବତା ପ୍ରସନ୍ନର ଚିହ୍ନ । ଆଶୀର୍ବାଦ । ତାର ମାନସିକ ପୂରଣ ହୋଇଯିବ ।

ସେଇଦିନୁ ସେ କଳା କୁକୁଡ଼ା ଖୋଜିବାରେ ଲଗି ପଡ଼ିଲା । ବାସ୍ନା ଚାଉଳର ଭାତ ଓ କଳା କୁକୁଡ଼ା ମାଂସର ତରକାରି ବେଶ୍ ଉପଭୋଗ୍ୟ । ପ୍ରତିଦିନ ପେଟ ଭରି ମୁଖିଆକୁ ସେ ଖାଇବାକୁ ଦିଏ । ସପ୍ତାହଟିଏ ଯାଇନାହିଁ, ମୁଖିଆ କହିଲା—"ହଇଲୋ, ମୋତେ କାହିଁକି ଜାଲୁ ଜାଲୁ ହୋଇ ଦେଖା ଯାଉଛି । କ'ଣ କିଛି କରନ୍ତୁ ନାହିଁ ।"

ସ୍ତ୍ରୀ କହିଲା—"ମଲା, ତମର ବୟସ ହୋଇଗଲା । ଆଉ କ'ଣ ହେବ ?"

ଦିନେ ମୁଖିଆ କହିଲା—"ଆଲୋ, ମୋତେ ତ କିଛି କାହିଁ ଦିଶୁ ନାହିଁ । ମୋତେ ଟିକିଏ ଧର । ମୁଁ ଯାଏଁ । ସେଇଦିନୁ ସେ ଅନ୍ଧାଳି ଅନ୍ଧାଳି ଯାଏ । କେହି ଘରକୁ ଆସିଲେ, ଚିହ୍ନି ପାରେ ନାହିଁ । ଘରେ ଗଲାବେଳେ ଝୁଣ୍ଟେ । ରାସ୍ତାକୁ ବାହାରିଲେ, କାହାକୁ ନ ଧରିଲେ ପାଦୁଣ୍ଡେ ଯାଏ ନାହିଁ ।"

ଏହା ଦେଖି ସ୍ତ୍ରୀ ତାର ଖୁସି । ତାର ପ୍ରେମିକକୁ ସେ ଖବର ଦେଲା । ଏବେ ମୁଖିଆ ଥିଲା ବେଳେ ପ୍ରେମିକ ତାର ଘରକୁ ଆସେ । ମୁଖିଆକୁ ଅନ୍ଧ ବୋଲି ସେମାନେ ଭାବନ୍ତି । ତେଣୁ ତାଙ୍କର ଡର ଭୟ କିଛି ନ ଥାଏ ।

ଦିନେ ମୁଖିଆ କହିଲା—"ଆଲୋ ହେ, ତୁ ନ ଥିଲାବେଳେ ଏ ଘରେ କୁକୁର ପଶୁଛି । ମୁଁ ତ କିଛି ଦେଖି ପାରୁ ନାହିଁ । ତା ଗନ୍ଧ ବାଧି ଶବ୍ଦରୁ ଯାହା ଜାଣୁଛି । ତୁ ମୋତେ ଗୋଟେ ବାଡ଼ି ଦେ । ମୁଁ ତାକୁ ବାଡ଼େଇ ଦୁରୁଡ଼େଇ ଦେବି ।"

କଥାଟା ସ୍ତ୍ରୀ ମନକୁ ଆସିଲା । ସେ ଗୋଟିଏ ବେଶ୍ ବଡ଼ ମୋଟା ବାଡ଼ି ସ୍ୱାମୀକୁ ଦେଇ ଦେଲା ।

ପରଦିନ ରାତିରେ ତା ସ୍ତ୍ରୀର ପ୍ରେମିକ ଆସିଲା । ମୁଖିଆ ତ ବାଡ଼ି ଧରି ଜଗି ଥିଲା । ଜାଉଁର ଦୁଆର କରି ବେଶ୍ ତା ମୁଣ୍ଡକୁ ପିଟିଲା । ମୁଣ୍ଡ ଫାଟିଗଲା । ସେ ପଡ଼ି ମରିଗଲା ।

ମୁଖିଆ ତାର ସ୍ତ୍ରୀକୁ ଡାକି କହିଲା—"ଆଲୋ, ଶୁଣୁଛୁ । କେଉଁଠୁ ଗୋଟିଏ ବୁଲା କୁକୁର ଆସିଥିଲା । ବେଶ୍ ଦି ପାହାର ଦେଇଛି । କ'ଣ ତାର ହେଲା ଜାଣି ପାରିଲି ନାହିଁ ।"

ସ୍ତ୍ରୀଟି ଯାଇ ଦେଖିଲା—ସେଠି କୁକୁର ନାହିଁ । ତାର ପ୍ରେମିକ ମରି ପଡ଼ିଛି । ସେ ଡରି ଗଲା । ଭୟରେ ବରଡ଼ା ପତ୍ର ପରି ସେ ଥରିଲା । ସ୍ୱାମୀ ତ ତାର ଅନ୍ଧ । ତେଣୁ ଶବଟି ଏଠି ପଡ଼ିଲେ, ପୋଲିସ ତାକୁ ଧରିବ । ମୃତ୍ୟୁ ଦଣ୍ଡ ହୁଏତ ମିଳିବ । ସେ କିଛି ଆଉ ଭାବି ପାରିଲା ନାହିଁ । ଶବକୁ ଟାଣି ଟାଣି ନେଇ ତାର ବାପାଙ୍କ ବାରିକୁ ନେଇଗଲା । ଗୋଟିଏ କଦଳୀ ଗଛକୁ ଆଉଜାଇ ବସାଇ ଦେଲା । ତାପରେ ଚୁପ୍ ଚାପ୍ ହୋଇ ଚାଲି ଆସିଲା ।

କାଳେ କିଏ କଦଳୀ ନେଇଯିବ ବୋଲି ପ୍ରତିଦିନ ରାତିରେ ସ୍ତ୍ରୀଟିର ବାପା ବାଡ଼ିଟିଏ ଧରି କଦଳୀ ବଗିଚ୍ଚ ବୁଲେ । ସେଦିନ ସେ ବି ବୁଲିଗଲା । କଦଳୀ ଗଛ ମୂଳରେ ଲୋକଟିଏ ବସିଥିବାର ଦେଖି ତାକୁ ଚୋର ବୋଲି ସେ ଭାବିଲା । ତାକୁ କି ସେ ଆଉ ଛାଡ଼େ । ଖୁବ୍ ଜୋର୍‌ରେ ପିଟିଲା । ଲୋକଟି ମାଡ଼ରେ ଟଳି ପଡ଼ିଲା । ହାତ ମାରି ଦେଖିଲା—ସେଇଟା ମଲା ମଣିଷ । ତାର ଘାରି ଭୟ ହେଲା । ଶବଟିକୁ ଉଠାଇ ନେଇ ପାଖ ଲୁଣ ଗୋଦାମ ପାଖରେ ବସାଇ ଦେଲା ।

ରାତିରେ ଲୁଣ ଗୋଦାମ ମାଲିକ ତାର ଗୋଦାମକୁ ଜଗେ । ମଝିରେ ମଝିରେ ଚାରିପଟ ବୁଲି ଦେଖେ । ଲୋକଟିଏ ବସିଥିବା ଦେଖି ସେ ଭାବିଲା ଚୋର ସମ୍ଭବ ଗୋଦାମ ଘରି ଭାଙ୍ଗି ଚୋରି କରିବାକୁ ଆସିଛି । ସେ ବାଡ଼ିଟିଏ ଆଣିଲା । ତାକୁ ମନଇଚ୍ଛା ପିଟିଲା । ଲୋକ° ଉଁ କି ଚୁଁ ନ ହେବାର ଦେଖି ତା’ ପାଖକୁ ଗଲା । ସେ ଯେ ମରିଯାଇଛି, ଏହା ଜାଣି ସେ ବ୍ୟସ୍ତ ହୋଇ ଉଠିଲା । ସକାଳ ପର୍ଯ୍ୟନ୍ତ ସେଠି ଅପେକ୍ଷା କଲା । ତାପରେ ପୋଲିସକୁ ଖବର ଦେଲା । ସେ ପୋଲିସକୁ କହିଲା— ମୋ ପ୍ରହାରରେ ଲୋକଟି ମରି ନାହିଁ । କିଏ ଲୋକଟିକୁ ହତ୍ୟା କରି ମୋ ଗୋଦାମ ପାଖରେ ରଖି ଦେଇଛି ।

ପୋଲିସ ଦେଖିଲା—ଲୋକଟି ମରିଗଲା । କେହି ତା ପାଇଁ କାନ୍ଦୁ ନାହାନ୍ତି । କେହି ଆସି ତାର ଶବ ନେବାକୁ କହୁ ନାହାନ୍ତି । ଏ ତ ଅତି ଆଶ୍ଚର୍ଯ୍ୟ କଥା । ତେଣୁ ସେମାନେ କିଛି ଭଡ଼ାଟିଆ ସ୍ତ୍ରୀ ଲୋକ ଆଣିଲେ । ଶବ ପାଖରେ ବାହୁନି କରି କାନ୍ଦିବାକୁ କହିଲେ । ପୋଲିସ ଚାରିଆଡ଼େ ତୀକ୍ଷ୍ଣ ନଜର ରଖି-ଥାଏ ।

ଭଡ଼ାଟିଆ ସ୍ତ୍ରୀ ଲୋକମାନେ ବେଶ୍ ବଡ଼ ପାଟିରେ ଛାତିକୁ ବାଡ଼େଇ କାନ୍ଦୁଥାନ୍ତି । ଏତିକିବେଳେ ପୋଲିସ ଶୁଣି ପାରିଲ—ମୁଖିଆର ସ୍ତ୍ରୀ କାନ୍ଦ କାନ୍ଦ କହୁଛି, ପ୍ରଥମେ ମୋର ଦୁର୍ଭାଗ୍ୟ । ତାପରେ ମୋର ବାପାର । ଶେଷରେ ଲୁଣ ବେପାରିର ।

ପୋଲିସ କଥାଟା କ’ଣ ଜାଣିବା ପାଇଁ ମୁଖିଆର ସ୍ତ୍ରୀକୁ ପଚାରିଲା । ସେ କିନ୍ତୁ କିଛି ପ୍ରକାଶ କରିବାକୁ ନାରାଜ । ସେମାନେ ମୁଖିଆକୁ ପଚାରିଲେ । ଯାହା ଘଟି ଯାଇଥିଲା, ଆମୂଳଚୂଳ ମୁଖିଆଟି ବର୍ଣ୍ଣନା କଲା ।

ପୋଲିସ ମୁଖିଆର ସ୍ତ୍ରୀକୁ ଧରିନେଲେ । ରାଜା ସମସ୍ତ କଥା ଶୁଣି ତାକୁ ଫାଶୀ ଦେବାକୁ ଆଦେଶ ଦେଲେ ।

———

# ପୃଥିବୀର ଲୋକକଥା

| | | |
|---|---|---|
| ୧। | ଭିଏତ୍‌ନାମ | ଟ ୧୦-୦୦ |
| ୨। | ଲାଦାଖ (୧) | ଟ ୧୦-୦୦ |
| ୩। | ଲାଦାଖ (୨) | ଟ ୧୦-୦୦ |
| ୪। | ପଞ୍ଜାବ (୧) | ଟ ୧୦-୦୦ |
| ୫। | ପଞ୍ଜାବ (୨) | ଟ ୧୦-୦୦ |
| ୬। | ପଞ୍ଜାବ (୩) | ଟ ୧୦-୦୦ |
| ୭। | ପଞ୍ଜାବ (୪) | ଟ ୧୦-୦୦ |
| ୮। | ପଞ୍ଜାବ (୫) | ଟ ୧୦-୦୦ |
| ୯। | ପଞ୍ଜାବ (୬) | ଟ ୧୦-୦୦ |
| ୧୦। | ପଞ୍ଜାବ (୭) | ଟ ୧୦-୦୦ |
| ୧୧। | ଉତ୍ତର ପ୍ରଦେଶ (୧) | ଟ ୧୦-୦୦ |
| ୧୨। | ଉତ୍ତର ପ୍ରଦେଶ (୨) | ଟ ୧୦-୦୦ |
| ୧୩। | ଉତ୍ତର ପ୍ରଦେଶ (୩) | ଟ ୧୦-୦୦ |
| ୧୪। | ଉତ୍ତର ପ୍ରଦେଶ (୪) | ଟ ୧୦-୦୦ |
| ୧୫। | ମଧ୍ୟ ପ୍ରଦେଶ (୧) | ଟ ୧୦-୦୦ |
| ୧୬। | ଆସାମ (୧) | ଟ ୧୦-୦୦ |
| ୧୭। | କାଶ୍ମୀର (୧) | ଟ ୧୦-୦୦ |
| ୧୮। | କାଶ୍ମୀର (୨) | ଟ ୧୦-୦୦ |
| ୧୯। | କାଶ୍ମୀର (୩) | ଟ ୧୦-୦୦ |
| ୨୦। | ଇହୁଦୀ (୧) | ଟ ୧୦-୦୦ |
| ୨୧। | ହିମାଚଳ ପ୍ରଦେଶ (୧) | ଟ ୧୦-୦୦ |
| ୨୨। | ଆସାମ (୨) | ଟ ୧୦-୦୦ |
| ୨୩। | ଋଷିଆ (୧) | ଟ ୧୨-୦୦ |
| ୨୪। | ସାନ୍ତାଳ (୧) | ଟ ୧୦-୦୦ |
| ୨୫। | ଇଟାଲୀ (୧) | ଟ ୭-୦୦ |
| ୨୬। | ମଧ୍ୟ ପ୍ରଦେଶ (୨) | ଟ ୧୨-୦୦ |
| ୨୭। | ଇହୁଦୀ (୨) | ଟ ୧୨-୦୦ |
| ୨୮। | ଶ୍ରୀଲଙ୍କା (୧) | ଟ ୭-୦୦ |
| ୨୯। | ଶ୍ରୀଲଙ୍କା (୨) | ଟ ୧୦-୦୦ |

## ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରବନ୍ଧ

ମହାନ୍ତିପଡ଼ା, କଟକ-୨